# ବାଣାହରଣ ।

(ଗୀତାଭିନୟ)

ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ।

ମୂଲ୍ୟ—ଦୁଇଅଣା

# ଉପହାର ।

ଅଶେଷ ସୌଜନ୍ୟସୁଗୁଣାଧାର ଲୋକପ୍ରିୟ ମାନନୀୟ ଶ୍ରୀଯୁକ୍ତ ଶଶିଭୂଷଣ ଦେବ ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ଦେବଗଡ ବାମଣ୍ଡା ମହୋଦୟଙ୍କ ଉଦାରହୃଦୟେଷୁ,

ମହାଭାଗ !

ବାମଣ୍ଡାର ସଙ୍ଗୀତସାହିତ୍ୟଝରଣୀ କାଳର ପ୍ରଖର କିରଣରେ ଶୁଖି ଯାଇଅଛି, "ବୃଥଦ୍ୱଂଶ କେଳୀସର" ବା, ଣ୍ଡା ଅଦ୍ୟ ଭୀଷଣ ସଂହାର ମରୁଭୂମିରେ ପରିଣତ ହୋଇଅଛି । ନୈରାଶ୍ୟର ବିକଟଛବି ମାନସପଟରେ ସର୍ବଦା ପ୍ରତିଫଳିତ ହେଉଅଛି ; ଏତାଦୃଶ ଦୁର୍ଦ୍ଦିନରେ ଆପଣ ମାତୃଭାଷାପ୍ରତି ଅନୁରାଗୀ ହୋଇ ଦେବଗଡ଼ରେ "ରାମକୋଯାଳକ ଥିଏଟ୍ରିକେଲ ପାର୍ଟି" ନାମଧେୟ ଯେଉଁ ସାଙ୍ଗିତିକ ଅନୁଷ୍ଠାନ ସ୍ଥାପନ କରିଅଛନ୍ତି ଦେବଗଡ଼ବାସୀ ପ୍ରତ୍ୟେକଙ୍କର ତାହା ଗୋଟିଏ ସଙ୍ଗୀତ ଚର୍ଚ୍ଚାର ପବିତ୍ର ପୀଠସ୍ୱରୂପ ବିଦ୍ୟମାନ ହୋଇଅଛି ; ଅଧିକନ୍ତୁ ଦେବଗଡ଼ର ଅଳ୍ପଶିକ୍ଷିତ ଯୁବକମାନଙ୍କୁ ନାନାପ୍ରକାର ଉତ୍ସାହ ପ୍ରଦାନପୂର୍ବକ ଉତ୍ସାହିତ ତଥା ଅଗ୍ରହାନ୍ୱିତ କରାଇ ଉକ୍ତ ପାର୍ଟିର ଦଳଭୁକ୍ତ କରାଇଥିବାରୁ ସେମାନେ ନିଜ ନିଜ ଯୁବକସୁଲଭ ଉଚ୍ଛୃଙ୍ଖଳତା ଭୁଲିଯାଇ ଦୈନନ୍ଦିନ ସାଂସାରିକ କାର୍ଯ୍ୟର ଅବସର ସମୟରେ ସେମାନଙ୍କ ଅପେକ୍ଷା ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କର ସହବାସରେ ସଙ୍ଗୀତ ଚର୍ଚ୍ଚା କରି ନିଜ ନିଜ ଜୀବନକୁ ସଭ୍ୟ ଏବଂ ମହତ କରିବାର ସୁବିଧା ଲାଭ କରିଅଛନ୍ତି । ସମଗ୍ର ବାମଣ୍ଡାର ଆଦର୍ଶ ପୁରୁଷ ମହାମନା ଶ୍ରୀଯୁକ୍ତ ଜଳଧର ଦେବଙ୍କର ଔରସରେ ଆପଣ ଜନ୍ମଗ୍ରହଣ କରି ଦୀପ୍ତିକାନ୍ତ ପୀତସମ ପିତାଙ୍କର ପ୍ରତ୍ୟେକ ସଦ୍‌ଗୁଣ ନିଜ ଜୀବନରେ ପ୍ରତିଫଳିତ କରି

ତାଦୃଶ ସଦ୍‌ଗୁଣ କୋଶରେ ମହାଶୟଙ୍କ ଶ୍ରୀ ଚରଣ-
ଆଗାର ଦେଖି ଏ ଦୀନ ଲେଖକ ଶ୍ରୀଚରଣରେ ... ଏବଂ
ଅକୁଣ୍ଠ ହୋଇ ଭବଦୀୟ ଉତ୍ସାହ ଶ୍ରୋତ୍ରରେ ଲିଖିତ "ବାଣ-
ହରଣ" ଭବଦୀୟ କରରେ ଅର୍ପଣ କଲି । ଦେବାଦେବୀର ପୂଜା
ବାଟିକାରୁ କୁସୁମ ଚୟନ କରି ସେହି ଦେବତାଙ୍କର ମସ୍ତକରେ
ଅର୍ପଣ କଲେ ଦେବତା ସ୍ୱହସ୍ତପୂଜା ଅପେକ୍ଷା ଭକ୍ତଙ୍କ ଯେପରି
ଭକ୍ତିରେ ସନ୍ତୁଷ୍ଟ ହୁଅନ୍ତି ତଦ୍ରୂପ ମୋର ଏହି "ବାଣହରଣ"
ଗୃହୀତ ହେଲେ ନିଜକୁ ଚରିତାର୍ଥ ମଣିବି ।

ଦେବଗଡ଼-ବାମଣ୍ଡା
ସୁନିଆଁ
୧୩୩୪ ସାଲ
ତା ୧୯,୯,'୧୭

ଭବଦୀୟ ସଦ୍‌ଗୁଣ ମୁଗ୍ଧ
ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ

# ଭୂମିକା ।

ସଙ୍ଗୀତ ବିଦ୍ୟାରେ ମୋର ଆଦୌ ଅଧିକାର ନାହିଁ ; ମୁଁ ଓଡ଼ିଆଭାଷାରେ ସଙ୍ଗୀତ ସମ୍ବନ୍ଧୀୟ କ. ଖ. ଗ. କରି ପଢ଼େ ଅଧେ ଲେଖାଲେଖି କରିଆଏ ବୋଲି ବନ୍ଧୁବର "ରାମଗୋପାଳଙ୍କ [illegible]କେଳ ଯାତ୍ରାପାର୍ଟିର ତତ୍ତ୍ୱାବଧାୟକ" ଓ ନାୟକ ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ଶ୍ରୀମାନ ଶଶିଭୂଷଣ ଦେବ ମହୋଦୟଙ୍କ ପାରିଶ ଅଭିନନ୍ଦ ନିମନ୍ତେ ଖଣ୍ଡିଏ ବହି ଲେଖିବାକୁ ମୋତେ ଉତ୍ସାହପ୍ରଦାନ କରିବାରୁ ମୁଁ ଏଥିରେ ହସ୍ତକ୍ଷେପ କରି ଯଥାଶକ୍ତି କର୍ତ୍ତବ୍ୟ ଶେଷ କରିଅଛି ; ଓଡ଼ିଆ ଭାଷାନୁରାଗୀମାନେ ଜାଣନ୍ତି କବିବର ୰ରାଧାନାଥ ନିଜର ଗ୍ରନ୍ଥାବଳୀରେ " ବାଣହରଣ " ନାମକ ଗୋଟିଏ ମହାଭାରତୀୟ ଆଖ୍ୟାନ ସନ୍ନିବେଶିତ କରିଅଛନ୍ତି । ମୁଁ ସେହି ଘଟନାର ସମ୍ପୂର୍ଣ୍ଣ ଅବଲମ୍ବନରେ ନୂତନ ପ୍ରାଚୀନ ରାଗରାଗିଣୀ ସଂଯୋଗକରି ସାଧାରଣ ଯାତ୍ରାଢଙ୍ଗରେ "ବାଣହରଣ" ପାଠକମଣ୍ଡଳୀର ହସ୍ତରେ ଅର୍ପଣ କରିଅଛି ; ଉପରେ କହିଅଛି ସଙ୍ଗୀତ ତଥା ରାଗରାଗିଣୀ ସମ୍ବନ୍ଧେ ମୋର ଆଦୌ ଅଭିଜ୍ଞତା ନାହିଁ ; ଏବିଷୟରେ କାମଣ୍ଡାର ସଙ୍ଗୀତକଳାସୁନିପୁଣ କୁମର ଶ୍ରୀମାନ ସୀତାକାନ୍ତ ଦେବଙ୍କ ନିକଟରୁ ମୁଁ ଯଥେଷ୍ଟ ସାହାଯ୍ୟ ସହାନୁଭୂତି ପାଇଅଛି ; ପ୍ରିୟ ସୀତାକାନ୍ତ ବାବୁ ପ୍ରାୟ ପ୍ରତ୍ୟେକ ଗୀତର ସ୍ୱର ଦେଇ ସମସ୍ତ ଗୀତଗୁଡ଼ିକ ଶ୍ରମସ୍ୱୀକାରପୂର୍ବକ ହାରମୋନିୟମରେ ମିଳାଇ "ବାଣ ହରଣ" ଲିଖନ କାର୍ଯ୍ୟର ଅପରିସୀମ ସାହାଯ୍ୟ କରିଥିବାରୁ ମୁଁ ତାଙ୍କ ନିକଟରେ ଚିରକୃତଜ୍ଞ ;

ଲେଖକ



## ନାଟ୍ୟୋଲ୍ଲିଖିତ ପୁରୁଷ ଓ ସ୍ତ୍ରୀ

### ପୁରୁଷଗଣ

ଦୁର୍ଯ୍ୟୋଧନ—
ଭୀଷ୍ମ—
ଦ୍ରୋଣାଚାର୍ଯ୍ୟ—
କର୍ଣ୍ଣ—
ଶକୁନି—
ଯୁଧିଷ୍ଠିର
ଭୀମ
ଅର୍ଜ୍ଜୁନ
ନକୁଳ
ସହଦେବ
ଶ୍ରୀକୃଷ୍ଣ
ଦୂତ—

### ସ୍ତ୍ରୀ

ଦ୍ରୌପଦୀ
ଦୂତର ସ୍ତ୍ରୀ
ସ୍ୱର୍ଗର ଅପ୍ସରାଗଣ
ଇନ୍ଦ୍ରକୁମାରୀଗଣ

# ବାଣାହରଣ ।

## ପ୍ରସ୍ତାବନା ।

"ଦେବୀ ବାଣୀପାଣି ସରୋଜବାସିନୀ" ବୃତ୍ତେ

ଭକତ ଜୀବନ     ଦୁରିତ ଭଞ୍ଜନ
ଜୟହେ କୃଷ୍ଣ କଂସାରି !
ଗୋପୀପ୍ରାଣଧନ     ମଦନମୋହନ
ଜୟ ଗୋକୁଳବିହାରୀ ! ଘୋଷା

ନମୋ ଗିରିଧାରୀ ଛନ୍ଦବନ୍ଧହାରୀ ପତିତପାବନ ମୁକୁନ୍ଦ ମୁରାରି
ବ୍ରହ୍ମାଣ୍ଡ କରତା ହର୍ତ୍ତା ପିତା ମାତା ଭବଭୟଦୁଃଖହାରୀ ॥ ୧
କରୁଣାସାଗର ପୀୟୂଷ ଭଣ୍ଡାର କୃପାକଣା ଦାନ ଦୀନେ ଦୟାକର
ସଜ୍ଜନ ରଞ୍ଜନ ଏବଡ଼ କଠିନ ଭରସା ଏକା ଶ୍ରୀହରି ॥ ୨
ଦୀନ ଅକିଞ୍ଚନ ଜାଣେ ନାରାୟଣ ଦ୍ରୁପଦଦୁଲଣୀ ଲଜ୍ଜାବିମୋଚନ
ଥାଅହେ ସହାୟ ଚିତ୍ତେ ଏ ହୃଦୟ ଗାଉଛି ଯଶ ତୁମ୍ଭର ॥ ୩
ଯେଉଁଭାବେ ହରି ଭୀଷ୍ମ ଛଳିକରି ପାଣ୍ଡବ ଶମନ ଚିର ନେଲ
—ହରି
ଭକତବତ୍ସଳ ଭକ୍ତେ ରଖି-ଲ କହିବୁଁ ତାହା ବିସ୍ତାରି ॥ ୪
ନାହିଁ ସେ ଶକତି ଅଟେ ଯଦୁପତି ଗାଇବୁଁ ତୁମ୍ଭର ବିମଳ କୀର୍ତ୍ତି
ପ୍ରଭୁ ଅଳ୍ପମୂଳ ଦାସ ପ୍ରାଣେ ନିଲ ଶଙ୍କୁ ହେବି ପାରି ॥ ୫

---

୧ମ ଅଙ୍କ    ୧ମ ଦୃଶ୍ୟ ।

ସ୍ଥାନ—କୌରବ ଶିବିର,

ଦୁର୍ଯ୍ୟୋଧନ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶକୁନି ।

ଭୀଷ୍ମ—( ଦର୍ଶକଆଡକୁ ଚାହିଁ ) ନାରାୟଣ ! ନାରାୟଣ!
( ଦୁର୍ଯ୍ୟୋଧନ ପ୍ରତି ) ବତ୍ସ ଦୁର୍ଯ୍ୟୋଧନ ! ଅଜ ତୋର
ମୁଖମଣ୍ଡଳ ବିରସ ଦେଖାଯାଉଅଛି କାହିଁକି ? ମନରେ
କୌଣସି ସନ୍ଦେହ ଉପସ୍ଥିତ ହୋଇଅଛି କି ? ଧର୍ମ
ଯୁଦ୍ଧଭୂମିରେ ଏଭଳି ବିରସ ମନ ହେବା କ୍ଷତ୍ରୀୟପକ୍ଷେ
ବଡ ଅସୁନ୍ଦରକଥା

"ବାଣୀ ନଶୁଣି ଶୋଭୁଛି କହ ପଳାଉଛି" ବୃତ୍ତେ !
କହରେ ମାନଗୋବିନ୍ଦ ! କାହିଁ ଚିନ୍ତିତ ଅଜ
ଦେଖୁଛି ବଦନେ କପାଳବଷାଦର ଭାବରାଜ (ପଦ)
ବୀରଶ୍ରେଷ୍ଠ ଏକାଦଶ     କୃପ ଦୁଃଶା ଦ୍ରୋଣ ଦ୍ରୌଣୀ
ଅଠରକ୍ଷଉଣୀ ବୀର ରହିଛନ୍ତି ତୋତେ ବେଢି ॥ ୧
ନୃପକୁଳେ କିଏଅଛି     ତୋରସଙ୍ଗେ ସମକକ୍ଷ
ଖଟିଛନ୍ତି କମଳିନୀ ଷଦେଶନାଏ ନବନଳ ॥ ୨
କ୍ଷତ୍ରିରାଜା ମଧ୍ୟେ ଶ୍ରେଷ୍ଠ     ସକଳ ଗୁଣେ ଗରିଷ୍ଠ
ପରଶୁରାମାପୃଣରୁ କ କଷ୍ଟେ ହେଉଛୁ ଭାଜ ॥ ୩
ପାଣ୍ଡବଙ୍କ କଷ୍ଟ ସ୍ମରି     ଅନୁତାପେ ଦଣ୍ଡଧାରୀ
ହେଉଅଛୁ ଅବାଧାର ? କହ ନ ପାରିବେ ରାଜ ॥ ୪

ଦୁର୍ଯ୍ୟୋଧନ-(ଶୁଷ୍କହାସ୍ୟ) ଚମତ୍କାର ସାନ୍ତ୍ୱନା ! ! ! ପିତାମହ !
ଆପଣଙ୍କର ଯଦି ଏଭଳି ଅନୁରାଗ ଥିଲା ଯେକଥା ମୋତେ

ତୁମ୍ଭଙ୍କୁ ପରିଷ୍କାର କହୁଥିଲେ ମୁଁ ପ୍ରଥମ ସେନାପତି ବରଣ ବିଷୟରେ ଚିନ୍ତା କରିଥାନ୍ତି । ଆପଣଙ୍କୁ ସେନାପତି କରିବାଦ୍ୱାରା ଶତ୍ରୁପକ୍ଷର କେତେକ ନିରୀହ ପଦାତିକ ସୈନ୍ୟର ବିନାଶ ଛଡ଼ା ଅନ୍ୟ କୌଣସି ଅନିଷ୍ଟ ହୋଇନାହିଁ । ପରାକ୍ରମଶକ୍ତି ଦୃପ୍ତତେଜରେ ରଣଭୂମିରେ ବିଚରଣ କରୁଅଛନ୍ତି । ଏଥିରେ କି ମନରେ ଆନନ୍ଦର ପ୍ରକାଶ ହୁଏ ?

"କେଉଁ ସୁଖସାରେ" ବୃତ୍ତେ ।

ମନର ବେଦନା ଜୀବନ ଯାତନା ପିତାମହ କିସ କହିବି ,
ତୁମ୍ଭର ଭରସା ହେଲା ଲୋକହସା ଅପମାନ କେତେ ସହିବି
( ଘୋଷା )
ତବ ବାହୁବଳେ ଶତ୍ରୁ ବିନାଶି , ସସାଗରା ଧରା ସମ୍ପଦରାଶି
ସ୍ଥିର କରିଥିଲି ଲଭିବି ବୋଲି କରମକୁ ସିନା କାନ୍ଦିବି ॥ ୧
ଆପଣାର ବୋଲି ଜାଣେ ମୁଁ ଯିନା, କପଟ ବୁଝିବି ଘୋରଛଳନା
ରତ୍ନହାର ମଣି ପିନ୍ଧିଅଛି ଫଣୀ ସେ ଫଳ ଶେଷରେ ଭୁଞ୍ଜିବି ॥ ୨
ଦବାଗ୍ନି ଚନ୍ଦ୍ର ପାଣ୍ଡବ ହିତ, ପାଣ୍ଡବେ ଆଶ୍ରିତ ତୁମ୍ଭର ଜାଡ୍ୟ
ତାହାଙ୍କ କେବଳ କଥା ସରଳ ଏଥିରେ କି ଆଶା ପୋଷିବି ॥ ୩

ଭୀଷ୍ମ—ବାବୁ ଦୁର୍ଯ୍ୟୋଧନ ! ବୃଥାରେ ମୋତେ ନିନ୍ଦା କରୁଅଛ , ପଞ୍ଚପାଣ୍ଡବସହ ଗୋଳମାଳ କରିବା ବିଷୟରେ ମୁଁ ତୋତେ ପ୍ରଥମରୁ ବାରଣ କରିଅଛି , ପାଣ୍ଡବମାନେ ମନୁଷ୍ୟ ନୁହନ୍ତି , ସେମାନେ ଦେବତାର ଅଂଶରେ ମର୍ତ୍ତ୍ୟମଣ୍ଡଳରେ ଜନ୍ମଗ୍ରହଣ କରିଅଛନ୍ତି ; ସେମାନଙ୍କୁ ସାମାନ୍ୟ ମନୁଷ୍ୟ ଭାବିବା ବଡ଼ଭୁଲ ।

" ଯମୁନା କୂଳେ କାଳିଆ କେତେହଠା କଲା ମା " ବୃତ୍ତେ ।

ନାରୁଛି ତୁଚ୍ଛକୁ ମୋତେ ନନ୍ଦାକରୁ ସିନାଏ
ପଶ୍ଚଲ୍ କରଛନ୍ତି ବାବୁ ! କେତେ ଥର ମନାରେ ଯଦ ।
ଧର୍ମ୍ମପ୍ରାଣ ପାଣ୍ଡବର ସଖା ନନ୍ଦେ ଦାମୋଦର
ଛନ୍ନପୁରେ ନାହିଁ ବସ୍ତ୍ର ପାଣ୍ଡବ ତୁଳନାରେ । ୧
ବସ୍ତ୍ର ଅଂଶୀ ପାଞ୍ଚଭାଇ ଧରମେ ଶାସିବେ ମହୀ
ବୀରପଣେ ଇନ୍ଦ୍ର ରୁଦ୍ର ତାଙ୍କଆଗେ ଊଣାରେ । ୨
ଦେଖିଛନ୍ତି ସଭାତଳେ କୃଷ୍ଣାବସ୍ତ୍ର ଟଣାଟାଣେ
ହସ୍ତେ ବୀରତ୍ୱ ସବୁ ପଡ଼ିଅଛି କଣାଇରେ । ୩
ଭୀମେ ବିଷଲଡୁ ଦେଲ୍ ଯତୁଘର ପୋଡ଼ାଇଲ୍
ବିପଦ-ଅନଳେ ପଡ଼ି ହେଲେ ପୋଡ଼ାସୁନାରେ । ୪

ଦୁର୍ଯ୍ୟୋଧନ—ପିତାମହ ! ପରମଶତ୍ରୁ ପାଣ୍ଡବମାନଙ୍କର ପ୍ରଶଂସା ପୁରାଣ ଶୁଣିବାକୁ ମୁଁ ଏଠାକୁ ଆସିନାହିଁ ; କିମ୍ବା ସେଭଳି ପୁରାଣ ଗାନ କରିବା ନିମନ୍ତେ ଆପଣଙ୍କୁ ପୁରାଣପଣ୍ଡା ରୂପେ ବରଣ କରିନାହିଁ । ଆପଣଙ୍କୁ ଏହି ବିଶାଳ କୌରବ ବାହିନୀର ମୂହଥରରୂପେ ବରଣ କରି ବିପକ୍ଷ ପକ୍ଷର ଦର୍ପଚୂର୍ଣ୍ଣ କରିବା ଭାର ଅର୍ପଣ କରିଥିଲି ; ପାଣ୍ଡବ ବିଜୟ ଆପଣଙ୍କର କର୍ତ୍ତବ୍ୟ ; ଆପଣ ନିଜର କର୍ତ୍ତବ୍ୟପଥ ତ୍ୟାଗକରି ବାଟେ କଥାରେ ମୋତେ ବଶୀଭୂତ କରିବା ଚେଷ୍ଟା ଅସଙ୍ଗତ ନୁହେଁକି ? ସେଥି ଯାହାହେଉ ଆପଣଙ୍କର ଅଭିପ୍ରାୟ ପରିଷ୍କାର ବୁଝାଗଲା ।

“ଗମ୍ଭୀରଘୋଷୀ କଥାଁ ମୋଠାରେ”, ଶୁଣେ !
ଅଜି ଜାହ୍ନବୀ ତଟ କୁଞ୍ଜେ ଶୁଣାଗଲା ତବ ବେଣୁର
ଲଳିତ ସ୍ୱନ ହଳାହଳ ବାସ୍ନାରେ କେବଳ ବୋଳୁଛ ସୁଧାସାର ॥ ଧନ୍ୟ !

ଯଦା କର ଗଳାଧାର
ଗୁଣ ଗାଅ ଭଗାଶର
ଶୁମ୍ଭଠାରେ ଆଶା ପୋଷିବା ଦୁରାଶା
କପାଳ ଦଶା ମୋର ॥ ୧

ଗୋପାଳକୁ ଭକ୍ତିକର
ପାଣ୍ଡବେ ପରାଣେ ଡର
ଉପକାର ଯାହା ମୋହର କହିବ
ହଶିଲଣି ପ୍ରଖର ॥ ୨

ଆହା ଏତେ ଭକ୍ତି ପ୍ରୀତି
ଯଦ ଅଛା ପରପ୍ରତି
ପ୍ରାଣ ଭୀକ୍ଷା କର ପାଣ୍ଡବ ନିକଟେ
ଭକ୍ତି ସ୍ତୁଣ ସାଦର ॥ ୩

ଶକୁନି—ସଂସାରରେ ଏପରି କେତେ ଲୋକ ଅଛନ୍ତି, ଯେମାନେ ଭାବନ୍ତି, ଦୁନିଆରେ ଆମଠାରୁ ବଳି ଚାଲାକ କେହି ନାହାନ୍ତି; କୁରୁପତି ମହାରାଜ ଦୁର୍ଯ୍ୟୋଧନ ଆଗରେ ସେ ଧରୂ ଚତୁରୀ କେତେଦିନ ଚଳିବ? ମହାରାଜ ଯଥାର୍ଥ କହୁଅଛନ୍ତି; ତୁକୁଭାଟାକୁ ମଧ୍ୟ ଠିକ ଠଉରାଇ ନେଇ ଅଛନ୍ତି । କଷଟି ପଥରରେ ଭେଲ ଭଲ ଟଣା-ପଡ଼ମାଏ ।

କର୍ଣ ହରଣ

(ସ୍ୱଗତ) ବୃଦ୍ଧ ତାତ ଅବାସ୍ତାଏ କୁରୁକୁଳ ନିର୍ମୂଳ ହେବନାହିଁ ସୁତରାଂ ମୋର ଉଦ୍ଦେଶ୍ୟ ସଫଳ ହେବନାହିଁ । ହେଗୋ-ସାନ୍ତ୍ୱ, ଲୀଳାମୟ ଭରସା ! (ପ୍ରକାଶ୍ୟ ଗୀତ)

(ଧ୍ରୁବପଦ)

ଘଟନ୍ତୁ ପରା ରଣରଙ୍ଗ ।
ପ୍ରାଣେ କିଆଁ ଏତେ ଶଙ୍କା ।
ମୁଖେ ବାକ ନାହିଁ  ଅଙ୍ଗ ଜଳ ଖାଲି
ମନ ପାଞ୍ଚ ବିଚାର ॥
ଜାଣି ପ୍ରତିଦ୍ୱନ୍ଦ ରଣେ
ନିର୍ଭୀକ ପାଞ୍ଚାଳଗଣେ
ଆର ପରଶଂସା  ନେବାକୁ ଲାଳସା
ଦିନା ହୀନ ବର୍ଗର ॥

କର୍ଣ୍ଣ—ଉଚିତ କଥା ; ତାହାରେ ନିଜର ହୋଇ ହିତରେ ଛୁରୀ ଚଳାଇବା ଅମନୁଷ୍ୟତାର କାର୍ଯ୍ୟ ।

ସାହସ ନଥିଲା ଯେବେ
ଗୁରୁ ଭାର କିପାଁ ନେବେ
ବୃଥାରେ ବହିଲ  ଲୋକହସା କଲ
ଏହି ନିନ୍ଦା କାହାର ॥
ବାଞ୍ଛାରଣେ ସେନାପତି
ବଢ଼ିବାରୁ କୁରୁପତି
ପ୍ରତି ଉପକାର  ଏଥା କରିବ ତାର
ଦେହରକ୍ଷାସମର ॥

ବାଣ ସ୍ବରଣ

ତୁଚ୍ଛ ପାଣ୍ଡୁସୁତ ଛଡଣ
ମାର ନାହିଁ ଆଠ ଦିନେ
ହୋଇଣ କେଶରୀ          ପଶ ମାତ୍ରି ମାର
ଛାଡ଼ କର ଓଷାର ।

ଭୀଷ୍ମ—(ସ୍ୱଗତ) ଜୀବନ୍ମରଣ ଜାଣ୍ଟୁ ! ଘୋର ଅପମାନ !
ଯଥେଷ୍ଟ କାନ୍ଦୁଣା ! ଶେଷେ ଅହି[illegible] ,
ଜାହ୍ନବୀ ଗରଭେ ଜନ୍ମି—ବୀର ଶ୍ରେଷ୍ଠ ଭୀଷ୍ମ ,
ଏହି ପରିଣାମ କହେ ଲକ୍ଷ୍ମଣ ହର ?
(ପ୍ରକାଶ୍ୟ) ଦୁର୍ଯ୍ୟୋଧନ ! ଦୁର୍ଯ୍ୟୋଧନ ! ଅପହ୍ୟ ଦେଖୁଛି
କର୍କଶଭାରତ ତୋର, ବଜ୍ରଶୈଳସମ
ପୀଡ଼ଇ ହୃଦୟ—ଏହି ହୀନ ଚେତାଙ୍କର
ମର୍ମାନ୍ତିକ-ବାକ୍ୟ-ବାଣ , କାଣ୍ଡଜ୍ଞାନ ହୀନ-
ରାଧାର ନନ୍ଦନ, ଦେଖ ଦୁର୍ମତି ଶକୁନି
କୁରୁବଂଶ ନାଶ ବୁଦ୍ଧି ଶିଖାଏ ସତତ ,
ନବୁଝି ଦୁଷ୍ଟର ଦୁଷ୍ଟ ଦୁରଅଭିସନ୍ଧି
ଭିଆଇ କଳହ ଘରେ ଭାଇଭାଇ ମଧ୍ୟେ
କୁରୁକୁଳ ଧ୍ୱଂସ ପାଇଁ ଜାଳିଅଛୁ ଚିତା;
ଶେଷେ କରୁ ଗୁରୁଜନେ ଚୋଟପା ପ୍ରହାର ?
ଶକୁନି—(ସ୍ୱଗତ) ଧଇଲା ଧଇଲା ନିଆଁ, ଏଣିକ ସମିଧ ହେଲେ
ପରଲୋକରେ ଗାନ୍ଧାର ବଂଶର ଆନନ୍ଦ ବଢ଼ିବ ।
(ପ୍ରକାଶ୍ୟ) ଦୋଷ ହେଲା ଆମର !! ବୀରପଣିଆ ଚାହ ?
ସତ୍ୟ ନ୍ୟାୟକଥା କହିଲେ ଏତେ ରାଗ କାହିଁ ?

ଶାନ୍ତି ଭ୍ରମଣ

( ପୂର୍ବ ପଦ )

ସମରେ ନାଶ ତ ଦୋଷ
ବଇର ମମତା ତେଜନ୍ତୁ
କହିଦେଲେ ରୋଷ          ଧର୍ମରାଜ ଦୋଷ
କେଉଁ ନ୍ୟାୟ ବିଚାର ॥
କୁରୁକୁଳ ଶତ୍ରୁ ପ୍ରୀତି
ରହିଛି ମାନସେ ଗାଢ଼
କପଟ ଅନ୍ତର          କପଟ ବିଚାର
ସବୁକାଳେ ତୁମ୍ଭର !

ଭୀଷ୍ମ— ଚୁପ୍ ରହ ଅର୍ବାଚୀନ ! କୌରବ କୁଙ୍ଗାର !
ମୋ ସମ୍ମୁଖେ କହୁକଥା ମଥା ଟେକିକରି ?
ଗର୍ବପୂର୍ଣ୍ଣ ହୋଇକରୁ ନୈଷଧର ନିନ୍ଦା ?

( ସ୍ୱଗତ) ଅସହ୍ୟ ହେଉଛି କ୍ରମେ ଏ ଶଠବଚନ
ଦୁର୍ଜ୍ଜୟ କ୍ରୋଧାଗ୍ନି ଜ୍ୱଳେ ଦ୍ୱିଗୁଣିତଭାବେ ,
କ୍ରୂରମତ ପାପିଷ୍ଠର ପାପଅନ୍ନ ଖାଇ
ସମରେ ନିପତ ହେବା ଅନ୍ୟାୟ ସମ୍ପ୍ରତି ;
ପାଣ୍ଡବ-ମମତା ହେବ ଭୀରୁତ-ବ୍ୟଞ୍ଜକ ,
ଜନ୍ମିଛି କ୍ଷତ୍ରୀୟ କୁଳେ, ଜାଣେବା'ଚିତ ଧର୍ମ
ପାଳିବି ସମରେ କଲ୍ୟ, ଅପମାନ-ବହ୍ନି
ଲିଭାଇବି ସଦ୍ୟ ସଦ୍ୟ ପାଣ୍ଡବ ଶୋଣିତେ ।
ଦୁର୍ଯ୍ୟୋଧନ !



## ବାଣ ହରଣ

" ଶ୍ୟାମା ରମଣୀ ଗୁରେ " ବୃତ୍ତ ।

ଆଜ ଟରଣୀ ପଥ ,   ବରଜ ବଇରି-ଭୀତ ,
ଭଣେ କାଲ ଅଗ୍ରତ ,   ନାଶିବ ମହୀପତ
କରିବି ଅପାଣ୍ଡବା   ଧରମର ଧରତ । ଘୋଷା ।
(ଅଜ) ଏ ଧନୁଧର ,   କହୁଅଛି ପଣକର
ସାକ୍ଷୀକର ସୁରପୁରୀ,   ଶରଣ ରଖିଲେ ହରି
ବଞ୍ଚିବେ ନାହିଁ ଅରି,   ଯଶୀପୂର ଗିରଧ । ୨ ।
(ଶୁଣ) ରାଜନ ଧୀର !   ଦୂଳିଶିବ ସୁରବର ,
ସୁରାସୁର ଚରାଚର ,   ସପକ୍ଷ କରିଲ ସମର
ନାହିଁ ରକ୍ଷା ଦେବୁକିଷା ,   ଭାଙ୍ଗିବ ମୁଁ ହୃଦଧି ।
(ଅନ୍ତ) ମୋଠାରେ ବାଣ ,   ପାଣ୍ଡବକୁଳଶମନ
ନାହିଁ ତହିଁ ପରିତ୍ରାଣ,   ଡେଜମାନ ନାରାୟଣ
ଦେଖାଅ ସମର ଭେଦ,   ଚମକାଇ ଅଗ୍ରତ । ୩
(କାଲି) ପାଣ୍ଡବ ପ୍ରାଣ,   ନନେଲେ ମୁଁ ଦାନମାନ
ଗଙ୍ଗାର ନୁହେଁ ନନ୍ଦନ,   ଭୀଷ୍ମନାମ ମୂଲ୍ୟହୀନ
ଉଚ୍ଚାରଣେ ପାପପୂର୍ଣ୍ଣ   ହେବ ଏହୁ ଜଗତ । ୪

—୦—

ଦ୍ରୋଣ—ଆଉ ନାହିଁ, ଆଉ ପ୍ରେମ୍ପୁ ପାଣ୍ଡବଙ୍କର ରକ୍ଷାନାହିଁ ! ପ୍ରତିଜ୍ଞା ? ଭୀଷ୍ମର ପ୍ରତିଜ୍ଞା ଭୀଷଣ ସାଙ୍ଘାତିକ !! ସ୍ୱୟଂ ଚତୁର୍ମୁଖ ବ୍ରହ୍ମା ମଧ୍ୟ ଏ ବଜ୍ରକଠିନ ପଣକୁ ଅନ୍ୟଥା-ଚରଣ କରିବା ଦୁରୂହ ; (ଚିନ୍ତାକରି) ତେବେ କଣ କଣ ଧର୍ମପ୍ରାଣ ପାଣ୍ଡବଙ୍କ ଅସ୍ତିତ୍ୱ କାଲି ଲୁପ୍ତହେବ ?

ତାହାହେଲେ ବୁଝାଯିବ ଲୀଳାମୟ ଚକ୍ରୀ ଚକ୍ରଧରଙ୍କ ଉଦ୍ଦେଶ୍ୟ ଅତୃପ୍ତି ରହିଲା । ( ଭୀଷ୍ମ ପ୍ରତି ) ମହାମତି ଗାଙ୍ଗେୟ , କଅଣ ଭଲେ ? ଜୀବନରେ ଘୋର ଅନ୍ୟାତାଙ୍କୁ ନିଜେ ବରଣ କଲେ ? ( ଦୁର୍ଯ୍ୟୋଧନ ପ୍ରତି ) ଦୁର୍ଯ୍ୟୋଧନ ! ଭୀଷଣ ଅନ୍ୟାୟ କରଅଛ , ଗୁରୁଜନ ପ୍ରତି ଅସଙ୍ଗତ ବାକ୍ୟବାଣ ପ୍ରୟୋଗ କରି ଭୀଷମ ଅପରାଧ ଅର୍ଜ୍ଜନ କରିଅଛ , କ୍ଷମାଭିକ୍ଷା ପ୍ରାର୍ଥନା କର ।

" ଛି ଛି ବୁ ସୁନ୍ଦର " ବୃତ୍ତେ ।

ଛି , ଛି , ମାନ ଗୋପନ୍ତ, ତୁମ୍ଭ ଗୁରୁଜନେ ସଦା ନିନ୍ଦ କର

ଘୋଷା

ଭୀଷ୍ମ ପିତାମହ ଜଗଦ୍ଭକ୍ତମାନ୍ୟ ଭାରତ ବିଖ୍ୟାତ ବୀର
ନିଜପ୍ରାଣପରି ତୁମ୍ଭେ ଯେ ତାଙ୍କର ନୁହନ୍ତି ପର ତୁମ୍ଭର ।୧
ତେଣୁ ସେ ଲୋକ କଥା ଯେ ଶୁଣ ସର୍ବଥା ମହତ ମର୍ଯ୍ୟାଦାହର
ନୁହଇ ଉଚିତ ଏ ଦାନବନାଥ ଏଭାବ ଚେତନ୍ତ ନାହର !
ହେଲେ ଯା ହେବାର କ୍ଷମା-ନୀର-ଧାର ଅଜାଡ଼ି ଅନ୍ତାଚରଣେ
ଅପମାନ-ଅଗ୍ନି ନିଭାଅ ଏଷିକି ବିନୟ ଧୀର ବଚନେ ।୨

ଶକୁନିଃ— ଉଚିତ ଉଚିତ, ( ସ୍ୱଗତ ) " ବଚନେ କାହିଁ ଦରିଦ୍ରତା " ।

ବେଶ୍ଚି—

ଦୁର୍ଯ୍ୟୋଧନଃ—

କୃତାର୍ଥ ହେଲା ଜୀବନ ଶୁଣି ଏ ସୁଧା ବଚନ
ବିଷମ ସମରେ ବୁଦ୍ଧି ହେବାରୁ ବଣା ,

ସେନାପତି ଶାସ୍ତ୍ରୀ ଜାଣି      ଦେଇଛନ୍ତି ହେ ଧୀମଣି
ନିଶ୍ଚିନ୍ତ ହୃଦୟେଁ କରେ ସକଳ ଭାର
କରନ୍ତୁ ଯା କରିବାର      କୁଳବୃଦ୍ଧ ସୁବିଚାର
ନିନ୍ଦା ପରଶଂସା ରଖି ନିଜ ଉପର ।
ଶେଷେ ମୋର ଏହି ପ୍ରାର୍ଥନା ।
ଅଜ୍ଞାଭବ କଳଙ୍କରୁ କର ମାର୍ଜ୍ଜନା ।

ତେବେ ପିତାମହ ! ଗୁରୁଦେବ ! ବର୍ତ୍ତମାନ ଅନେକ ରାତ୍ରି ହୋଇଗଲାଣି ; ଆପଣମାନଙ୍କର ବିଶ୍ରାମର ସମୟ ଅତୀତ ହୋଇ ଯାଉଅଛି ବିଶ୍ରାମ କରନ୍ତୁ ; ( କର୍ଣ୍ଣପ୍ରତି ) ସଖେ ! ଆପଣ ମଧ୍ୟ ଆସନ୍ତୁ ; ( ଭୀଷ୍ମ ଦ୍ରୋଣ କର୍ଣ୍ଣ ପ୍ରସ୍ଥାନ ) ମାତୁଳ ! ତୁମ୍ଭର ସଦୁପଦେଶରେ ରାଜନୀତି ଚାଳନାରେ ମୁଁ ପ୍ରତ୍ୟେକ କାର୍ଯ୍ୟରେ ସଫଳ ମନୋରଥ ହେଉଅଛି ; ରଣଜୟ ପରେ ଉପଯୁକ୍ତ ପୁରସ୍କାରର ବ୍ୟବସ୍ଥା ନିଶ୍ଚୟ କରିବ ।

ଶକୁନି—(ବାହ୍ୟକ ଆନନ୍ଦରେ ଆନନ୍ଦିତ ହୋଇ ହେଣ୍ଡମାଥ)
ମହାରାଜଙ୍କ ଅନୁଗ୍ରହ ! ଆଗେ ମୋର ଉଦ୍ଦେଶ୍ୟ ସଫଳ ହେଉ, ଆପଣ ଅନନ୍ୟଜୟ ସିଂହାସନ ଲାଭ କରନ୍ତୁ, ପଛକଥା ପଛେ, ସେ ଯାହା ହେଉ ପାଣ୍ଡବଙ୍କର ଆଉ ରକ୍ଷାନାହିଁ ; ବୁଦ୍ଧୀ ଅକ ଯାହା ଘଷିଗଲେ ତାହା ପୁଣି ହେଲାଏ କାହିଁ ? ନିଅଁ-ଫୁଙ୍କ ନଥିଲେ କି ଚୁଲି ଜଳିଥାନ୍ତା ମହାରାଜ !

ଦୁର୍ଯ୍ୟୋଧନ— ଯଥାର୍ଥ କଥା ମାତୁଳ !, ବର୍ତ୍ତମାନ ଆପଣ ବିଶ୍ରାମ କରନ୍ତୁ ।      ( ପ୍ରସ୍ଥାନ )

## ୨ୟ ଦୃଶ୍ୟ ।

ଦୂତର ସ୍ତ୍ରୀର ପ୍ରବେଶ ।

ସ୍ତ୍ରୀ—( ସରକ୍ତଭ୍ବେ ) ମୁହଁ ପୋଡଲା ନାହିଁ, ଆସି ରାତି ହେଲାଣି ବଣଦଣ୍ଡ ଲୁଥିଦେଲା ମୋର ଜୀବନରେ ଆଉଁଚ ପାଉଁଚ ହୋଇ ଏଠେ ସେଠେ ଗଡ଼ୁଛନ୍ତି, ପୋଇଲା ପୁଅ ଯାଇ ଦାଣ୍ଡ-ଘରେ ଶୀବନ ଦେଇଚି । ଦାଣ୍ଡମାଇପ କଅଣ ଛାଡ଼ି ଦେଉଥିବ ସେ ଆସିବ ? ବାପ ମା ଝିଅକୁ ଅନ୍ଧଶାଳରେ ଡଙ୍କି ଚିପି ଦେବା ପଛକେ ଭଲ, ଇମିତ ଭଣ୍ଡାରିଆ ହାତରେ ବାନ୍ଧି-ଦେଇ କଳବଳରେ ପାଣି ମୁଗାଏ ନାହିଁ । ଇଏ କଅଣ ଲୋ ମା ? ଧନରାଚ ଷୋହଳ ପଡ଼ରୁ ପଡ଼ିଏ ଘରେ ଭେଟି-ନାହିଁ ? ମୁଁ କଅଣ ଏ ଜୁଅ ଦଶାଣ୍ଡ ଜନମଜାତ କରି ପକା-ଇଲି ବୋଲି ବୁଢ଼ୀ ହୋଇଗଲି ? ମୋଠୁ କଅଣ ସେଇ ଟେଡକି ମୁହଁ, ଲମ୍ବ ବେକଟା, କଣି ଗୋଡ଼, ଉଡ଼କପା-ଳୀ, ଏଡ଼େ ସୁନ୍ଦର ? ଗଣ୍ଡିଆ ଧର ସବସ୍ତ ନେଇ ତା'ର ଘରେ ଦୁଇ ଇଲା ; ଆଜ ଆସୁ ସେ ଘରେଇନ୍ଥି-ନଇଲେ ମୁଁ ଘରେ ରହେ ।

ଗୀତ

ପୋଉ ରସିକପଣ ଅଣ୍ଡିରୀର, ପେଉ ରସିକପଣ ଅଣ୍ଡିରୀର

ଘୋଷା

ରାତ ହେଲା ଦେଖ ବଣଧଣ୍ଡ ଯାଇ କାହାରଘରେ ଅଛି ପଶି ।
କେତେ କଠିବି କସ କରବି କାନ୍ଦୁଛନ୍ତି ଝୁଅ ଦେଲା ମୋର । ୧

ମୁଣ୍ଡମୋର ଉଡ଼େ ଫର ଫର, ତେଲ ଟୋପେ ନାହିଁ ଘରେ ମୋର,
ଛୁଆଳି ପାଇଁ କରଜ ନେଇ କିଣାହେବ ହିନା ତରଭର । ୨
ନାଇଥିଲି ବାପଘରେ ଯେ ପଙ୍କା, ଛଡ଼ାଛଡ଼ି ହୋଇଅଛି ବଙ୍କା
ପଇସା ନାହିଁ ମୋହର ପାଇଁ ମନ୍ତ୍ର ଅଛି ହାତ ଗୁଞ୍ଜର । ୩
କୁଟାକୁଟି ଏଣେ ଯାଉଛେଲି, ଛୁଆଳି ନାହିଁ ମୋ ଦିନ ଗଲା
ମୁହଁରେ ନିଆଁ ଦେଉପଣିଥି ଶାଢ଼ୀଟିଏ ଯାଏ ଦାଣ୍ଡଘର । ୪
ସାହୁ ତଗାଦାକାର ନିତିଆସେ, ନାଙ୍କ ମାରି ଭଲ କଥା ଭାଷେ
ସରମ ନାହିଁ ମରଣ ନାହିଁ ଥିକଯାଉ ଏତେ ଅନ୍ତର । ୫
ଟୋପାଣି ଦେଖି ମୋ ହାଡଜଳେ, କିଣାହେବ କେଉଁ ଫୁଲମାଳେ
ପିନ୍ଧିଗଲାବେଳେ ଯତ୍ନବେଳରେ ବୁଲିଯିବ ଭୁଲି ଘରଦ୍ୱାର । ୬

ଯାଏଁ ଉତ୍ତମାଶ୍ରେ କଂସାଠାରେ ବାଡ଼ିଦେଇ ଛୁଆ ପିଲା ଧରି ଶୋଇବ, ଖାଇଲେ ଟୋଜ ଭଲେ ନାହିଁ, ମୁଁ ଆଉ ବାହୁଗଛି ପାରିବ ନାହିଁ । ସେ ରହିବ ଧଣ ମୁହଁରେ ନିଆଁ !!!

ଦୂତର ନିମ୍ନୋକ୍ତ ଗୀତ ଗାଇ ପ୍ରବେଶ ।

ଏହି କାଳର, ନାରୀ ମହଲ୍ଲା ବଡ଼ ଉଙ୍ଗଳ,
ସୁରସ୍ତ୍ର ଠେଙ୍ଗା ଗୋଲମିରେ ଛାତ୍ରେ ଗଲଣି ନଯାଏ ବୃଦ୍ଧରେ

ଘୋଷା

ହାକିମ ଅଗରେ ଶଗଙ୍କ ପ୍ରାଣରେ ବଡ଼ି ବଡ଼ି ବଟା ଅଣ୍ଟାର
ଖଟ ଖଟ ଭଇ ଘରକୁ ଫେରିଲେ ମଙ୍ଗଳ ଘରଣୀ ଅଛର । ୧
ସରୁପାଟ୍ଟପଡ଼ ଲୋଡ଼ା ଅଜକାଲି ମୋଟାଲୁଗା ନାହିଁ ଅଦର
ବଙ୍ଗାଳି ବେଣୀକୁ ଅଧିକ ଶଚ୍ୟା ଲାଗେ ଟିକି ସାବିଜ ବେଭାର । ୨
ଦାସୀଟୋକି ପଛ ଶାସୁବୁଢ଼ୀ ଥିଲେ ସକାଳୁ କାଟିବ କବାଟ

ବେଳ ଧାଗଡ଼ରେ ଭ୍ରୁଅସ୍ପଣୀ ଉଠିବୁଲନ୍ତ ଏଧର ସେଧର । ୩
ଦିଶି ଦିଶ ଯେତେ ଗହଣ ବସ୍ତ୍ର ଶୁଣି ଶୁଣି କାନ ବଧିର
ମାସେଯାଏ ଖଟି ଟଙ୍କାଡ ପାଉଅଛି କାହିଁବା ତରବ ଟବର । ୪
ପୂର୍ବାହ୍ଣାଢସଙ୍ଗା ନଥିଲେ ମନକୁ ଭଲ କଣ ଚୂଡ଼ା ସୁନ୍ଦର
ମନମାଫିକରେ ଯୋଗାଉ ନଦେଲେ ମନ ଛଦା ମାଧ କ୍ଷାହାର ।
ଇନ୍ଦ୍ରାଜଡାରେଲ ଜାକକୁ ଗନ୍ଧଚ ଛିଟ ବାନ୍ଧିବ ମୁଣ୍ଡର
କାହିଁ ଯୋଗାଇବ ସ୍ୱବାସ ଫୁଲର ସନ୍ଧେଳ କର ସଂସାର । ୬

ଆଜ୍ଞାମାନେ ଶୁଣିଲେ ? ଅଜକାଲ ନୂଆ ରସ ରସିଆ ନବପ୍ରେମିକା ଢଙ୍ଗି ଢଙ୍ଗ ମାଙ୍କପଙ୍କର ରଙ୍ଗଢ଼ଙ୍ଗ ଏହିପରି । ଗୁରସ୍ତ ବାହାରେ ମାଉଖାଉ, ଯୋଡାଖାଉ, ଗଳଥା ପାଉ; ଗୋଡ଼ଠା ସନ୍ଧ, ସେଥିରେ ତାଙ୍କର ଯାଏ ଆସେନାହିଁ; ଢାଙ୍କର ଫଉଶୀଳନ୍ତା ଅଗେ ପୂରଣ ନକଲେ ଦୃଷ୍ଟି ପ୍ରଳୟ !! ଗୁମେ ଦୃଣଆଶ ମୁଣ୍ଡବଳ ତା' ସେମାନେ ବାଣିବା ଦରକାର କରେ ନାହିଁ; ଯାଏଁ ବାଏଁ ବାଏଁ ବାହାରୁଥିଲେ ସମ୍ଭାଳି ହେବନାହିଁ । ମେଡ ଏତିକି ସେଇଲ ମାଇକିନିଆ ନୁହଁ ମୋତେ ଯୋଷା ନାଙ୍କଉ ଭଲ କର ସାଜଙ୍କଣି । ଯଦେ କଥା କହି ହେଲା ବା କୁଅଡ଼େ ମହାମଣ୍ଡଳପଟାକୁ ଯାଇହେଲା ଏଇ— ଯାଉଥିଲ ରାଜକାର୍ଯ୍ୟରେ ତା' ମନରେ ନିଅଁ କୋହଳକରି " ଶୋଇ କୁ—ଆ—ଡେ—( ସ୍ତ୍ରୀକୁ ଦେଖି ଚକିତ ଭାବେ ) ହେଉଛି ତ ? ଯଉଥ ମା !

ଦୃତର ସ୍ତ୍ରୀ—( କ୍ରୋଧରେ ) ମୁହଁ ପୋଡ଼ିଲା ନାହିଁ ? ଗଛ ଦସୁନାହିଁ ? ଷୋହଳଘଡ଼ି ପରଘରର ଖାବନ ଦେଉଛ ?

ସ୍ତ୍ରୀ— କଅଣ ଭାତ ରାନ୍ଧିବାକୁ ଧାନକୁଟିବାକୁ ଏ ନିଅଧରର ଅର୍ଦ୍ଧଲି ସହିବାକୁ ଏ ଘରକୁ ଅଣିଚ ? ( କ୍ରୋଧ ସ୍ୱରରେ ) ଯ—ଦୁ—ଅ—ମା !! କେତେ ଶରଧା ?

ଦୂତ—( ଭୟ ବିହ୍ୱଳଭାବେ ) ହଇଲେ ! ତୋ ପାଶରେ ତୋ ମୁହଁକୁ ଚାହିଁ କରି ସବୁବେଳେ ବସିଥିଲେ ପେଟ କିମିତି ଭରିବ ? ଏଇ ଯେ ଛଅ ପହରକୁ ଛଅଖଣ୍ଡ ଠିକଲି ବାଇ ହିନ୍ଦୁରତନେ କତ୍ତଲଟିପା ଦେଇ ଦାନମାନ ପାଉଥିବ ଋଷିମାନ ହଜିବ ତା' ହବ କୁଆଡ଼ୁ ? ଦେଖାତ ହେଲା ଦୂତପଣ , ଏଗୁଡାକତ ଭାଇରେ ଭଇରେ ସବୁବେଳେ ବାଡ଼ିଆ ହାଉଡଇ ହେଲେ , ଯେଉଁ ଠାରେ ଯେଉଁ କାମ ପଡ଼ିବ ସେଠାକୁ ଯାଇ ଖବର ଦ'ବର ନାଆଣିଲେ ରାତ ଉଛୁର ନାହହଡ଼କେ ମାସମୁଣ୍ଡକୁ ଦରମା ଗଣିବେ କିଅଁ , ଦେଖିଲହେ ଭାଇ ( ଦର୍ଶକ ମଣ୍ଡଳକୁ ଚାହିଁ ) ଏ ମ ଇକାନଅର ପ୍ରବୃତ୍ତି ? ସବୁଦିନେ ମୋ ସଙ୍ଗେ ଏହିପରି ବୁଝାଏ କଲି ନକଲେ ଏହା ପେଟରୁ ଭାତ ପଚୁନାହିଁ । ଯଦି ସବୁବେଳେ କୋଳରେ ଧରି ବସିଥାନ୍ତି !!! ମୁଁତ ଲଙ୍ଗଳା ମହାଦେବ ନୁହେ ଯେ—

ସ୍ତ୍ରୀ—ହଇରେ ଖଣ୍ଡିଆ ! ମୋତେ କୋଳରେ ଧରି ବସିଥା ବୋଲି କହୁଛ ? ଯା' ଯା'

ଦୂତ—ଓହୋ ! ଗୋଟାଏ କଥାକୁ ଲକ୍ଷନା ଦେଇ କହିଲି ନା ? ସତେ ସେଇଅ ? ଗୃତ ସେଇଥା ; ( କୋମଳସ୍ୱରରେ ) ଟିକି ଦବୁ ଶୋଇଲେଣି ନା ? ( ଏଣେ ତେଣେ ଚାହିଁ ) ଆଉ ଗୋଟିଏ କଥା ଜାଣିଲୁଣି ଯଦୁଆ ମ' ! — ଦୁର୍ଯ୍ୟୋଧନ

ରାଜାର ଗୁଣ୍ଡିଚା ଓଳି ଚୁପି ଚୁପି ଅସୁଥିବା ବେଳେ ବାଟରେ ଏହି ସୁନାମୁଦିଟି ପାଇଲା; ଭାବିଲା ଏଟି ଯଦୁଆ ମା ହାତକୁ ଏକା ସୁନ୍ଦର ଦିଶିବ । ନେ ଦେଖି ନିଗା ନେଗା ;

ସ୍ତ୍ରୀ— ଆଁ ! ଆଁ ! ସତେ ? ସତେ ? ଦେଖି ! ( ମୁଦି-ନେଇ ଅଙ୍ଗୁଳିରେ ଲଗାଇ ) ରସରାଜ ! ପ୍ରିୟବର ! ମୁଁ କହିଲି ବୋଲି ମନରେ ଦୁଃଖ କଲ କି ? ଆମେ ମାଇକିନାଏ ଛାଡ଼ ପର ? ଆମକଥା ଧରିଲେ ଚଳେନାହିଁ । ଏଁ ! ଏତେ ବେଳଯାଏ ଏହାକୁ ଏତେ ଦୁଃଖ ଦେଇଚ କାହିଁ ? ଦାନ-ବେଳେ ଯାହା'ହେଲା ଦେଖିକରେ ଦୁଃଖେସୁଖେ ଚଳିବା ! ପରାଣ ମାନୁନାହିଁ ମୋର ପଇଥା ନୂଆ ? ବେଗାବେଗି ଅସୁ-ଥାଚ, ଖାଇପିଇ ଅପଣା ଘରେ ଶୋଇପଡ଼ିଲେ ଗଲା ; ଅକା-କାଳ କାଳ କିଛି ଦେଖୁନାହିଁ ? ଆସ ! ଆସ ! ଗୋଡ଼ ଧୋଇ ତୋରାଣି ପିଅ, କେତେ ବାଟରୁ ବୁଲି ବୁଲି ଅସି-ବାକୁ ହେଉଚି । ଗୋଡ଼ରେ ଡେଲିଟିକାଏ ବି ମାରଦେବି ।

ଦୂତ— ମୁଁ ? ମୁଁ ଆଉ ମୁହୂର୍ତ୍ତେ ରହି ପାରିବି ନାହିଁ ; ବାପାଲେ ! ସମସ୍ତଙ୍କୁ ଭରସା ସେହି ଭୀମଠାକୁରକୁ ମୋର ପ୍ରାଣଡର । ତାର ଯେଉଁ ଆଖିତରାଟି, ସେଇଥିରେ ତ ମୋର ଲୋଟାଏ ପାଣି ।

ଦୂତର ସ୍ତ୍ରୀ— ଆଁ ଏତେ ଡର ଡର କାହିଁ ମ ?

" ଏଲପ୍ରେଡ ଥିଏଟ୍ରିକେଲ " ସୁର
" ଅର୍ଓମିୟୁଁ । ବାଙ୍କେ ମେ ଚକ୍ଷି ବାନାଓ " ବୁତରେ ।

ସ୍ତ୍ରୀ— କାହିଁକି ନାଥ ହେ ଡର ଡର

ଦୂ— ବାଜଅଛି ପଞ୍ଚ ମୁଣ୍ଡ ମୋର । ପଦ୍ମ ।

ସ୍ତ୍ରୀ — ସେ ଉଡ଼ିଯାଉ ଏ ଚକ୍ରରୁ ଧାଉ ବ ଜାଗନ୍ତର

ଦୂ— ସେଥିକାଣି ଏତେ ଧନ ! ସଂସାରେ କରବର । ୨

ସ୍ତ୍ରୀ— ନଉକର ଛଡ଼ା ଅନ ନାହିଁ କି କୃତ୍ୟଚାର ?

ଦୂ— ନବୁ ନାଳି ଚେଷ୍ଟା ସବୁ, ଲୋଳମ ଦିନ ମୋର ! ୩

ସ୍ତ୍ରୀ— ନାଲଘ'ର ସନ୍ଧ ଅଛୁ ଏତେ ହେଯ ବଗ୍ରାର

ଦୂ— ଜଣେ ସା ଅତ୍ୟାଚାର ବୋଲି ଧ୍ରୁବର । ୪

ସ୍ତ୍ରୀ— ଧ୍ବଜଯାଉ ଧ୍ବଜଧର ଶସ୍ତ୍ର ବାନ୍ଧିବାର

ଦୂ— ଶୁନା ଦେହ ! ଯେ ଗଭମା ନାଲନ୍ତି ଏ ଜାଡିର । ୪

ସ୍ତ୍ରୀ— ନାରୀ ହାର ଏକାମୁହିଁ କପଟ ଧ୍ୱବଧର

ଦୂ — ଭାଲ ଦେଇ ବସିଥିବୁ ମାନସ-କଷ୍ଟ । ୫

ସ୍ତ୍ରୀ— ଆଜ କେତେ ନାହିଁ ଭିଛି ଭୀଷଣ ଫଳଚର

ଦୂ — ଚନ୍ଦ୍ରାନାନ୍ତି ଜପୁଥିବୁ "ଶଙ୍କର ହର ହର" । ୬

ଦୂତ— ଯଦୁଅଛ ମୁଁ ତେବେ ଯାଉଛି, କାଲିକି ଫେରି ଆସିବି । ପିଲମାନଙ୍କୁ ଦେଖି ଘର ଭୁଆସୀ ସମ୍ଭାଳି ରହୁଥିବୁ, ବେଶି ପଦ୍ମକୁ ବାହାରବୁ ନାହିଁ । କଥାରେ କହନ୍ତି " ଅଳେ ସଖି ଆପଣା ମଦତ ଆପେରଖି " ତା'ଶୁଣିଛ ଅଧିକ କଣ କହିବି ; ଏକାଳର ଲୋକଙ୍କ କଥା ତ ଆଖିରେ ତ ଦେଖୁଛୁ, ମୁଁ ତେବେ ଯାଉଛି ।

ସ୍ତ୍ରୀ— ଯାଅ ତେବେ, ମୁଣ୍ଡ ବଜାଉଛ ?

ଉଭୟର ପ୍ରସ୍ଥାନ ।

—※※—

ଚାଣ ସ୍ମରଣ

ଅତୃପ୍ତ କୁମାରୀ ଗଣ ।

ଗୀତ

"ମାନସ ନନ୍ଦନ ଅଜ ଛାଡ଼ିଯାଅ" ବୃତ୍ତ ।

ଶୁଣହେ ସୁଜନେ ଏଣେ ରାଜା ମୃତ୍ୟୁରେ
ଶୀଘ୍ରରେ ଶୂନ୍ୟପ୍ରାଣେ ଅକୁଳ ଅନ୍ତର । ଘୋଷା ।
ବନ୍ଦି ଶ୍ରୀଧର, ଭୂଷି ଅଭ୍ୟନ୍ତରେ
ବଡୁଛନ୍ତି ଭକ୍ତ-ମନ ଅଜ ମାୟାଧର । ୧
ଶୋକେ କାତର, ଦେଖ ଗୁରୁ ସୋଦର
ଅଧୋମୁଖେ ଚାହିଁଛନ୍ତି ଶ୍ରୀବତ୍ସ ପଦ୍ମର । ୨
ସେନା ଶିବର, ଦଶଶନାହିଁ ସୁନ୍ଦର
ଗାଢ଼ଚିନ୍ତାଭରା ପ୍ରାଣେ ପଡ଼ିଲେ ଅସ୍ଥିର । ୩
ଚନ୍ଦନ ଖବର, ଅଣି ଏକାଠିଲେ ଚର
ଅପାଶ୍ରବା ସେବ ଧର୍ମ ଦୃଢ଼ଭକ୍ତ ଭୀଷ୍ମର । ୪



# ୨ୟ ଅଙ୍କ ।

## ୧ମ ଦୃଶ୍ୟ ।

### ପାଣ୍ଡବ ଶିବିର ।

ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଶ୍ରୀକୃଷ୍ଣ

ଯୁଧିଷ୍ଠିର—ମହାମତି ଶ୍ରୀକୃଷ୍ଣ ! ପିତାମହଙ୍କର ବିକ୍ରମ ଅବଧାରନ୍ତୁ, ମୁଁ ଦେଖୁଅଛି ଜୟଆଶା ଆମ୍ଭମାନଙ୍କର ଅନିଶ୍ଚିତ ଅଟଇ ମଧ୍ୟ ଏ ବିଷମ ସମରରେ ଅପଣ ବଡ଼ ଉଦାସୀନ ଦେଖୁଅଛି । ବର୍ତ୍ତମାନ ଉପାୟ କଅଣ ?

ଗୀତ

"କାହ ସହ ଶାମଳଗି କିରୁଦ୍ଧି କରତ" ବୃତ୍ତ ।

କହ ହରି ଏ ରଣସିନ୍ଧୁ ତରିବି କିପରି ହେ । ○ ।
କୋପକରି ପିତାମହ କରୁଛନ୍ତି ବଳକ୍ଷୟ
ପରାଣ ଦେଖି ଅଥୟ ବଳିଷ୍ଠ ବଇରି ହେ । ୧
ପ୍ରିୟଭାଇ ଅରଜୁନ କେତେ ହେବ ସାବଧାନ
ପଲକେ ଗଙ୍ଗାନନ୍ଦନ ଦେଉଅଛନ୍ତି ମାରି ହେ । ୨
ନିମିଷେ ଦଶସହସ୍ର ଭୀଷ୍ମବାଣ କରେଗ୍ରାସ
ଦିନୁ ଦିନୁ ସୈନ୍ୟହ୍ରାସ ସମ୍ମୁଖେ ତୋହର ହେ । ୩
ଭକ୍ତବନ୍ଧୁ ହେ ମୋହନ ଅରିଦର୍ପ କର ଚୂର୍ଣ୍ଣ
ନୋହେ ରାଜସିଂହାସନ (ଏବେ) ହେବ ବନଚାରୀ ହେ । ୪

ଶ୍ରୀକୃଷ୍ଣ—ମହାରାଜ ! ବୀର ସନ୍ତାନ ହୋଇ ଏଭଳି ଧୈର୍ଯ୍ୟଚ୍ୟୁତ ହେବା ସୁନ୍ଦର କଥାନୁହେ । ଏତଦ୍ୱାରା ଅମ୍ଭ-

## ଚାଣ ହରଣ

ମାନଙ୍କ ଷଡ଼ଯନ୍ତ୍ରା ଶୋଣିଷେ ଲଭନାହିଁ । ଶତ୍ରୁପକ୍ଷ ଅପ୍ରତି-
ଷର ମନର ଭାବ ଏତେଦୂର ଦୁର୍ବଳ ହୋଇଥାଇଲେ ସୁବିଧା-
ସ୍ଥିର କରିନେବେ ।

### ଗୀତ

"ପ୍ରସନ୍ନ ଶ୍ରୀମୁଖ ଅଛି ଶୁଖି ଯାଇଅଛି ରେ" ବୃଦ୍ଧେ ।
ଧୈର୍ଯ୍ୟଧର ଧର୍ମ୍ମରାଜ ପିତାମହଙ୍କର ଭୀଷ୍ମଙ୍କ
ଶୁଣିଲେ ହସିବେ ଶତ୍ରୁ ଉଚ୍ଚ ଏହୁ ନିନ୍ଦା
ବରଜ ଏ ଗୀତକୁ, ଦେଖ ରଣ ଗତିକୁ,
କରି ଉତ୍ତେଜିତ ନିଜ ସେନା ସେନାପତିଙ୍କି । ୨
ଧର୍ମ୍ମ କରେ ଧାର୍ମ୍ମିକଙ୍କୁ ବିପଦରୁ ତାରଣ
"ଯତୋଧର୍ମ୍ମ ସ୍ତତୋଜୟ" ହା ସିଦ୍ଧ ବଚନ
ଧର୍ମ୍ମ ରକ୍ଷାଜୀବନ , ବହୁଅଛୁ ଆପଣ
ଶକ୍ତି ନାହିଁ ଧରଣରେ ଧରମର ଲଙ୍ଘନ । ୨
ଭୀମାର୍ଜ୍ଜୁନ ପରି ଭ୍ରାତା ସହଦେବ ସହିତ
ବଳେଣ କାଙ୍କର ଯାର ଶତ୍ରୁ କ୍ଷୟ କରିବ ?
ମାଳବ ବା ମଗଧ, କୀରନ୍ତ ପାଣ୍ଡବ ,
ଉଦୟରେ ସୁଖଅଛି ବର୍ତ୍ତନ ଦାନବ । ୩
ମହାରାଜଙ୍କଠାରେ ଦ୍ରୋହ କରୁଅଛି ସମର
ଅସ୍ମୀପ୍ସୁ-ଅଙ୍ଗାରେ ନେବ ଅଙ୍ଗ ଅବଜ୍ଞାନର
ମଣିଲତ ଅପାର, ଉପଦେଶ ପ୍ରଚୁର
ଧରିବାକୁ ବଳେ ଅସ୍ତ୍ର ଅବଧି ଯେ ମୋହର । ୪



ଦ୍ରୁତ ଗତିରେ ଦୂତର ପ୍ରବେଶ ।

ଦୂତ— ଧର୍ମରାଜ ଯୁଧିଷ୍ଠିରଙ୍କର ଜୟ ହେଉ ।

ଯୁଧିଷ୍ଠିର-(ଚକିତଭାବେ) କିଏ ? ଦୂତ ? କି ସମ୍ବାଦ ଦୂତ ?

ଦୂତ— ମହାରାଜ ! ସମ୍ବାଦ ବଡ଼ ଭୀଷଣ ।

ଯୁ— ସେ କଅଣ ଦୂତ ! ଶୀଘ୍ର ହ ଶଙ୍କା ମାନସେ
ସ୍ୱପକ୍ଷ ଗୁଣି ବାର୍ତ୍ତା ପ୍ରକାଶି କରୁନ
ଦୂରୀଭୂତ କର ମୋର ମନର ଉଦ୍ବେଗ ,
କ୍ରୂର କୁରୁପତି କିବା ନବୀନ ଚକ୍ରାନ୍ତ
ଭିଆଇ ଅଛନ୍ତି ପୁଣି ମାତୁଳ ବୁଦ୍ଧିରେ ?
କହ ଦୂତ , କହ ବେଗେ ସମ୍ବାଦ ଭୀଷଣ ।

ଦୂତ— ମହାରାଜ ! ମୁଁ ଗୁପ୍ତବେଶରେ କଟକରେ ଥାଏ ; ମନଦେଇ ଯୁଦ୍ଧ କରୁନାହାନ୍ତି ବୋଲି ରାଜା ଦୁର୍ଯ୍ୟୋଧନ କର୍ଣ୍ଣ ଶକୁନି ପ୍ରଭୃତି ସମସ୍ତେ ଭୀଷ୍ମଦେବଙ୍କୁ ଅନେକ କଟୁକଥା କହିବାକୁ ଆରମ୍ଭ କଲେ । ଭୀଷ୍ମ ଅନେକ ପ୍ରକାର ବୁଝାଇଲେ ମଧ୍ୟ ସେମାନେ କାହିଁରେ ଧକ୍କା ନଦେଇ ଅଧିକ ପରୁଷଣରେ ଅଯଥା କଟୁକଥା କହିବାରୁ ବୁଢ଼ା ରାଗରେ ଜଳିଗଲେ ; ଶେଷରେ ସମସ୍ତେ ତର୍ଜ୍ଜିଅଣି କରି ଧରିବାରୁ ସେ ଚନ୍ଦ୍ର ସୂର୍ଯ୍ୟଙ୍କୁ ସାକ୍ଷୀ କରି ସ୍ୱର୍ଗର ଦେବତା ମାନଙ୍କୁ ଶୁଣାଇଁ-କରି ପଣ କରି ଅଛନ୍ତି କାଲି ଯଦି ମୁଁ ପୃଥ୍ୱୀ ଅପାଣ୍ଡବା ନକରେ ଭୀଷ୍ମନାମ ସ୍ମରଣ କଲେ ପ.ପ, ଭୀଷ୍ମନାମ ଉଚ୍ଚାରଣ କଲେ ପାପହେବ ।

କୃଷ୍ଣ— (ଦୂତପ୍ରତି) ଅସ୍ତୁ ଯାଅ । (ଅନୁଶୋଚନା) ହେକ୍ଷ !

ଯଥେଷ୍ଟ ହେଲା ! ଏତେବଡ଼ ଆୟୋଜନ ସମସ୍ତ ନିଷ୍ଫଳ ; ବିଧାତା ଯାହାପ୍ରତି ପ୍ରତିକୂଳ ଶତଚେଷ୍ଟା କଲେ ମଧ୍ୟ ସେଥିରେ କୌଣସି ଫଳ ହୁଏନାହିଁ । ମହାରାଜ ! ଆପଣ ଯେଉଁ ଅମ୍ବୀସ୍ତୁ ଅମ୍ବୀସ୍ତୁ ବୋଲି ନିନ୍ଦା ବ୍ୟାକୁଳ ହେଉଥିଲେ , ତାହାଁର ଯଥେଷ୍ଟ ପୁରସ୍କାର ହାତକୁ ଆସିଗଲା !! ଆଉ ଏ ସ୍ଥଳରେ ରହିବା ହାସ୍ୟାସ୍ପଦ ମାତ୍ର ; ମୋତେ ବିଦାୟ ଦଅନ୍ତୁ ତେବେ ମହାରାଜ ! ( ଏହା କହି ଆସନରୁ ଉଠିଗଲା )

ଅର୍ଜୁନ—ମିତ୍ର ! ଏକାଣ ? ଏତେ ଅଧୀର କାହିଁକି ? ଏଥିର ରହସ୍ୟ କଅଣ ? ଜାଗ୍ରତ ଅବସ୍ଥାରେ ସ୍ୱପନ ଦେଖୁ-ଅଛନ୍ତି ଯେ ?

ଗୀତ

"ଯେ ରାଧା ବାଉଳି ପ୍ରେମ ଉପାଉଳି" ବୃତ୍ତେ ।

କାହିଁକି ମୋହନ ଟେକିଲ ଆସନ
କି କଥାରେ ଏତେ ଥର ଥର ?
ସୃଷ୍ଟି ହର୍ତ୍ତା କର୍ତ୍ତା ଜଗ ମୁକ୍ତିଦାତା
ବ୍ରହ୍ମ ସେ କାହାକୁ ଏତେ ଡର ?
କହ ଯଦୁପତି ,
ମନେକି ପଡ଼ିଲା ପଦ୍ମବତୀ ?
ସେଥିପାଇଁ ମିତ୍ର ! ମରଣରେ ବ୍ୟସ୍ତ-
ହୋଇ କଲାଉନ୍ତୁ ମହାମତି । ୧
ଏତେ ଚିନ୍ତା ଯଦି ଥିଲା ହେ ଅନାଦି
କହିଥିଲେ ମୋତେ ଭଣି ଭଗର

ବାଣଉରଣ

ଅଣି ସଉଧବଣୀ     ଅଦେହ ଶିଖିପତି
ବେଣୁମୂର୍ତ୍ତି ବଡ ଆନନ୍ଦରେ
ନନ୍ଦଘୋଷେ ରଖି ,
ପୂଜ କରୁଥାନ୍ତି ପାପଅକ୍ଷି
ତ୍ରିକୁଣ୍ଡ ପୁରୁଷ     ଦିବ୍ୟ ସମାବେଶ
ସାର୍ଥକ ହୁଅନ୍ତି ନିତ୍ୟଦେଖି । ୨

କୃଷ୍ଣ— ରଙ୍ଗରସ କଥାନ୍ତୁହେ ପାର୍ଥ ଧନୁର୍ଦ୍ଧର
ବିକ୍ରମ ସେକଥାଯାଏ କହିଲି ଏ ତର
ମାଗୁଣି ଏତକ ମୋର ଶ୍ରୋଅର୍ଦ୍ଧ ନୃପତି
ବିଦାକର ଦଅ ମୁହିଁ ଯିବି ଦ୍ୱାରାବତୀ !

ଯୁଧି— ପାଣ୍ଡବସହାୟ ହର କରୁଣା ସାଗର
ଯିବପେବେ କହୁଥିଣ ରହ ମହାବାହୁ !
ଜଗତେ ବଢ଼ିତ କୃଷ୍ଣ ପାଣ୍ଡବର ସାହା
ପାଣ୍ଡବର ବଲବୁଦ୍ଧି ପାଣ୍ଡବର ନାହିଁ ,
ତୁମ୍ଭର ଭରସା ନାଥ ରଖିଥିଲୁ ମନେ
ତେଜିଣ ତୁମ୍ଭର ପ୍ରଭୋ ! ବୁଝିବ କେସନେ ?
କୁରୁକ୍ଷେତ୍ରେ କାଳଯାର ହେବାଠି ସମର
ଛାଡ଼ିକୁଣ୍ଡ ଅଭଗୁମ୍ଭେ ଯିବ ନିଜଘର ?

ଭୀମ— କୂଟଚକ୍ରୀ କୃଷ୍ଣ ! ତୁମ୍ଭ ଦିଗ୍ଭର ବେଟାସ
ଅଳ୍ପବୁଦ୍ଧି ତୁମ୍ଭର ଭାଳଇ ମୁହିଁ ମନେ
ଥିସ ଅପ ବସ ଠକ, ନହିଣ ଭଞ୍ଜେନେ ।

(ହାକଣ୍ଠ ଭୀମ ଜୋରରେ କୃଷ୍ଣଙ୍କୁ ଟାଣି ବସାଇ ଦେଲେ ।

କୃଷ୍ଣ—( ଭୀମ ଧରିଥିବା ସ୍ଥାନ ଆଉଁସି ଯନ୍ତ୍ରଣାର ମୁଖଭଙ୍ଗୀକରି ) ମହାରାଜ ! ଭୀମର ଏ ହୁଣ୍ଡାପଣ ଦେଖିଲେ ଏହାକୁ ମଣିଷ ବୋଲି କିଏ ବିଶ୍ୱାସ କରିବ ? ଏହାର ହାତଯୋଡ଼ାକ ପଥର ନା କାଠ କିଛି ବୁଝା ଯାଏନାହିଁ । ମୋରଠାରେ ଯାହାର ଲେଶମାତ୍ର ଉପରୋଧ ନାହିଁ ଅନ୍ୟକୁ ଏ କଅଣ ନକରିବ ? ଏ ଆଦରରେ ଅଉଁସି ଦେଲେ ମଣିଷର ଦେହର ଚମଡ଼ା ପରନ୍ତେ ଗୁଡ଼ାଇଯିବ ।

ଯୁଧି—ଶ୍ରୀହରି ! ଭୀମର ଏ ହୁଣ୍ଡାପଣ ନୂତନ ନୁହେଁ ; କ୍ଷମା ଦିଅନ୍ତୁ , ( ଭୀମପ୍ରତି ) ଭାଇ ବୃକୋଦର ! ସବୁଦା ନିଷ୍ଠୁର ଆଚରଣ ସୁନ୍ଦର ନୁହେଁ ; ସ୍ୱର୍ଗୀୟ ଭକ୍ତି ପ୍ରୀତିରେ ହୃଦୟ ପବିତ୍ର ରଖ ; ଭଙ୍ଗୁର ଶାରୀରିକ ବଳ ବଳ ନୁହେଁ ; ଧର୍ମବଳରେ ବଳୀୟାନ ହୁଅ ; ଭଗବାନ ଶ୍ରୀକୃଷ୍ଣଙ୍କ ମନରେ ଅଶାନ୍ତି ଆଣିଅଛ କ୍ଷମାଭିକ୍ଷା କର । ( ଭୀମକୁ ଯୁଧିଷ୍ଠିର ହାତଧରି କହିବା କାଳୀନ )

କୃଷ୍ଣ—ସ୍ଥିର ହୁଅନ୍ତୁ ମହାରାଜ ! ଭୀମସେନ ମୋର ସ୍ନେହରପାତ୍ର , ଭକ୍ତର ପଦାଘାତକୁ ମୁଁ ପଦକ ମନେକରେ । ତେବେ ବର୍ତ୍ତମାନ ତାଙ୍କ ମୁଖରୁ ଯାହା ଶୁଣିଲି ସେଥିରେ ମୋରଦ୍ୱାରା ଆପଣଙ୍କର କୌଣସି ଉପକାର ହେବନାହିଁ । ସୁତରାଂ ମୋ ପକ୍ଷରେ ପୂର୍ବରୁ ଏ ସ୍ଥାନ ତ୍ୟାଗ କରିବା ଉଚିତ । ବିଦାୟ ଦିଅନ୍ତୁ ମହାରାଜ ! ।

ଯୁଧିଷ୍ଠିର— "ଶ୍ଳୋକ"

କହ କହ ବନମାଳି ତୁମ୍ଭେ ଯେବେ ଯିବ ଚଳି କଗତ ଅମ୍ଭର ହେବ କୁରୁ-ସାଗରେ । କର୍ଣ୍ଣଧାର ବିନା ତରୀ ବୁଡ଼ିଯାଏ ଯଥା ହରି ବୁଡ଼ିବ ପାଣ୍ଡବ-କୁଳ ଘୋର ପଥରେ ॥ ପାଣ୍ଡବସହାୟ-ସମ୍ପଦ ॥ କଦୋଷେ ଅଶ୍ରିତ ଶିରେ ତାଳ ବିପଦ ।

ପାଣ୍ଡବର ନାଥ ହୋଇ ଅନାଥ କରୁ କପାଇଁ ତୋରଲାଗି ପାଣ୍ଡବର ଗରବ ଯିନା । ଯେବେ ଯିବ ଛାଡ଼ିକରି କାହାର ହେବ ମୁରାରି କପରି ରହିବ ଦେହ ପରାଣବିନା ॥ ଜଳବିନା କେବେ ମୀନାଲି ॥ ପାରନ୍ତୁ କା ସ୍ଥଳପଥେ ମୁହୂର୍ତ୍ତେ ଚଳି ! ୨

କୃଷ୍ଣ ! ତୁମ୍ଭେ ପାଣ୍ଡବର ଏକମାତ୍ର ଭରସା, ଏ ଦୁସ୍ତର କୁରୁସାଗରମଧ୍ୟରେ ତୁମ୍ଭେ ଛାଡ଼ିଗଲେ ଅମ୍ଭମାନଙ୍କର କି ଦଶା ହେବ ଥରେ ବିଚାର କର ।

କୃଷ୍ଣ— ମହାରାଜ ! ଭୀଷ୍ମର ପଣ ବ୍ୟର୍ଥ ହୁଏ ନାହିଁ ; ସାରଥି ମଧ୍ୟ ଅପରାଧୀ, ସେ ମୁହୂର୍ତ୍ତରେ ଯାହା କହିବ ତାହା ନିଶ୍ଚୟ କରିବ । ବିଶେଷତଃ ମୁଁ ଶୁଣିଅଛି ତୁମ୍ଭର ପଞ୍ଚଭାଇର ମୃତ୍ୟୁଶର ତାହାର ନିକଟରେ ଅଛି । ଏପରି ଅବସ୍ଥାରେ ତୁମ୍ଭକୁ ମୁଁ କୌଣସି ପ୍ରକାରେ ରକ୍ଷା କରି ପାରିବ ନାହିଁ । ସୁତରାଂ ତୁମ୍ଭମାନଙ୍କର ମୃତ୍ୟୁ ସମ୍ମୁଖରେ ଦେଖିବା ଅପେକ୍ଷା ମୁଁ ଚଳି ଯାଇଥିବା ଉଚିତ ।

" କହମା ସାରଥିଲେ " ବୃତ୍ତେ ।

ବଞ୍ଚିଲି ମେଲାଣି ଧର୍ମ ନରପଣି ଶଫଳ ଥାଇ ଏଠାରେ ଅଶ୍ରିତ କାଷଣ ସମ୍ମୁଖେ ଦର୍ଶନ ନଦ୍ରିହ ଉଚିତ ସମ୍ଭରେ । ୦ ।

ମୁହିଁ ପାଣ୍ଡବର ଜାଣଇ ସଂସାର ଯାଚିଲି ଜୀବନ ପାଣ୍ଡବ ସଙ୍ଗରେ
ନିଜ ଶକ୍ତିମତେ ଉଦ୍ଧରିଲି କେତେ ମରିବ ଭୀଷ୍ମ ହସ୍ତରେ । ୧
ତ୍ରିଭୁବନେ କେହି ଭୀଷ୍ମଆଗେ ନାହିଁ
କରଇ କହଇ ଯାହା ସେ କଥାରେ
ପ୍ରତିଜ୍ଞା ଭୀଷ୍ମର ଜାଣେ ତ୍ରିସଂସାର ଅନ୍ୟଥା ନହେବ ଗାରେ । ୨
ଗନ୍ଧର୍ବ କିନ୍ନର ସର୍ବସୁରାସୁର ସହସ୍ର ବରଷ ଏକାଏ ସମରେ
ଭୀଷ୍ମେ ନପାରିବେ ସର୍ବେ ହାରିଯିବେ
ଶକ୍ତି ଶାଳୀ ଗଙ୍ଗାବରେ । ୩
ପିତୃ ସୁଖଲାଗି ହେଲା ବଇରାଗୀ ଜଳାଞ୍ଜଳି ଦେଇ ସୁଖସମ୍ପଦରେ
ଚିରକୁମାରର ବ୍ରତବଳ ଯାର ନାହିଁ ମୃତ୍ୟୁ ଯମକରେ । ୪

( କୃଷ୍ଣଙ୍କର ଅଧୋବଦନରେ ଦଣ୍ଡାୟମାନ )

ଯୁଧି—ଦୀନବାନ୍ଧବ ହରି ! ସତେ ଅମ୍ଭମାନଙ୍କୁ ଛାଡ଼ି ଚାଲିଯିବ ?

---

“ଶ୍ରେଖି”

ଏସଂକହି ପଇବାଣ କରିବାକୁ ଜନାର୍ଦ୍ଦନ ଅସମର୍ଥ ହେଲ
ଯେବେ ରମାରମଣ । ପାଞ୍ଚଭାଇଙ୍କର କାଳ ପୁରିଲା ନିଶ୍ଚେ
ଗୋପାଳ ମରଣେ ନାହିଁ ଶୋଚନା ନନ୍ଦନନ୍ଦନ ॥ ଜନ୍ମିଲେ
ମରଣ ନିଶ୍ଚୟ ॥ ଅନ୍ତମେ ନଯାଅ ଛାଡ଼ି କରୁଣାଳୟ । ୧
ଉଭାହୋଇଥିବ କାଳ ରଣସ୍ଥଳେ ବନମାଳି ଶ୍ରୀମୁଖ ନିରେଖି
ଅମ୍ଭେ ଛାଡ଼ିବୁଁ ପ୍ରାଣ । ମୃତ୍ୟୁକାଳେ ପାଞ୍ଚଭାଇ ଦେଖିଛୋଛେ
ଭବଗ୍ରାହୀ ଲଭିବୁଁ ପଦମତେ ତୋର ଚରଣ । ଜପାଁ କରୁଅଛୁ
ବାନ୍ଧବ ॥ କୃପାନିଧି ଏହା କହେ ହେଲା ଉଚିତ ? । ୨

ମାତ୍ର ଆଶା ନପୂରନ୍ତ କୌରବ ଦର୍ପ ବଢ଼ିଲା ଅଧର୍ମକୁ ଜୟ-ଲକ୍ଷ୍ମୀ କଲେ ବରଣ । " ଯତୋଧର୍ମ୍ମ ସ୍ତତୋଜୟ " ନିଜକଥା ଲୀଳାମୟ ନିଜମୁଖେ ନିଜେକଲ ଆଜ ଖଣ୍ଡନ ॥ ରହିଲା ଅନ୍ତମେ ଯାତନା ॥ ଗରବ ଗଞ୍ଜନ ନାମ ବୁଡ଼ିଲା ସିନା । ୭

ଭୀମ—( କ୍ରୋଧରେ ) ଶଠ ! ଚତୁର ହରି ! ଯାତ-ନାଯୁକ୍ତ କଟୁକ୍ତିର ତୁମ୍ଭେ କେନ୍ଦ୍ର । ଲଜ୍ଜା ନାହିଁ ? ଦୁର୍ଯ୍ୟୋଧନକୁ ତଳକୁ ମୁହଁ ପୋଡ଼ି ବସିଅଛ ? ଚିନ୍ତା ନାହିଁ , ପାଣ୍ଡବମାନେ ଯଦି ପ୍ରକୃତ କୃଷ୍ଣର ଭକ୍ତ ନିଶ୍ଚୟ ରଣ ଜୟ କରିବେ ।

—✽—

" ଢଙ୍ଗ ନାହିଁ କାହେ ପରତରୁଣୀ ହରଣେ" ବୃତ୍ତ ।

ଲାଜ ନାହିଁ କହେ ହରି ! ହୋଇଛ ମଉନ
ଚକ୍ରୀ ଶ୍ରୀକରଙ୍କା ପୋଡ଼ିଅଛ ପଥା , ଚିନ୍ତାନାହିଁ ନାରାୟଣ ! ୦
ଯାଅଛୁ ହରି ଧର୍ମ୍ମ ଛାଡ଼ି ଆମ୍ଭର ଯିବନାହିଁ କଦାଚନ
ଶିରେ ଧର୍ମ୍ମ ଧରି ତୁମ୍ଭନାମ ସ୍ମରି ଭାଙ୍ଗିବୁଁ ଭୀଷ୍ମର ଟାଣ । ୧
ଅପାଣ୍ଡବା ଧରା କହିବ ସେ ପରା କରିଛୁ କଠୋରପଣ
କୋଟିଭୀଷ୍ମ ହେଲେ ତୁମ୍ଭେ ବସିଲେ ଦରପ କରିବୁଁ ଚୂର୍ଣ୍ଣ ।
ନଷ୍ଟ ହେବ ଜସ୍ତୀ ତୁମ୍ଭ ନାମ ଧାସ୍ତୀ ମାରିବ ମୁଁ ଦୁର୍ଯ୍ୟୋଧନ
ଦୁଃଶାବକ୍ଷ ଚିରି କୃଷ୍ଣାର କବରୀ ବାନ୍ଧିବ ବଂଶୀବଦନ । ୩

ଅର୍ଜ୍ଜୁନ— ପ୍ରଭୋ ! ଏ ଛଳନା କା'ଆଗରେ କରୁଅଛନ୍ତି ? ତୁମ୍ଭର ଦୟାରେ ଏ ଦାସ ବ୍ରହ୍ମାଣ୍ଡକୁ ତୃଣବତ ଗଣନା କରେ , ଭୀଷ୍ମ ତ ସାମାନ୍ୟ ମନୁଷ୍ୟ !

—✽✽—

ବାଣ ହରଣ

"ହେ ମୁରଲୀଧର ଜାଣିଲି ହୃଦୟ ଭ୍ରମର ହେ" ବୃତ୍ତେ ।

ହେ ଗୋପୀମୋହନା ! କରୁଛ କା'ଆଗେ ଛଳନା

ବୃଥା ବଢ଼ାଉଛ ହର ଏତେ କଥା ଅଜହିନା । ଘୋଷା ।

ଯା ଲାଗି ଏ ଅବତାର, ଅମ୍ଭେ ଅଟିଛୁଁ ସଞ୍ଚାର, ଜଗନ୍ନାଥ ଜାଣେ ପାର୍ଥ ଦୂତର ହବୁ ଘଟନା ।୧। ଭୀଷ୍ମର ସେ ପଣ ଶୁଣି, ହୃଅସ୍ତ୍ର ବେନୁପାଣି, କରୁପାରେ ତୋ କୃପାରେ ଗଙ୍ଗାସୁତ ଦର୍ପଚୂନା ।୨। ଯେଉଁ ଶରେ ଏତେ ଠାଣ, ଛେଦବ ତା' ଅଷ୍ଟଜାଣ, ରଣେକାଳି ବନମାଳି, ହସାଇବ ନିଜ ସେନା ।୩। ଏତେଯଦି ଥିଲାମନେ, ମଗାଥିଲ କପଁରଣେ, ନାରାୟଣୀ ସେନାପୁଣି ଦଗ ? ଦେବ ହେବେ ହଣା ।୪। ଅଦ୍ୟତେଳ ବାଲେ ହରି, କହବା କଥା ପାସୋରି, ଯାଅଥର ଭୀଷ୍ମେ ଉଚ୍ଚ; ଏହାବଡ ବଡମନା ।୫।

ଗ୍ରବ-ଶଙ୍କରାଭରଣ ।

ନକୁଳ— ଶିଶ୍ବର ବରଜ ଯିବ ଘିନା ଉମାପତି, ପାଣ୍ଡବ ହୃଦୟ ଦ୍ୱାର ସଦା ଦୃଢ଼ଅଛି, ତାହା ଲଙ୍ଘିବା କଠିନ, ଭକ୍ତ ପ୍ରୀତି ତୋରେ ଛନ୍ନା ଦୃଜୀବ-ଚରଣ ।

ଉକ୍ତରାଗ

ସହଦେବ:— ନାଡ଼ବଶାହିଦ ହରି ଶେଳ କେତେ ନାଡ଼, କୃଷ୍ଣବନା ପାଣ୍ଡବର ନାହିଁ ଅନଂତଛ, ଯଦା ବାହାରେ ଭୃଛରେ, ରହ ପାଣ୍ଡବର କର ପରୀକ୍ଷା କାହାରେ ।

ଦ୍ରୌପଦୀ—( କଷାନ୍ତରରୁ ବାହାର ହେଉ ଶ୍ରୀକୃଷ୍ଣଙ୍କ ପ୍ରତି ) ହଁ ହଁ ସେ ସବୁ ଛଳ ବୃଭୁଷ ଛାଡ଼ ଶୀଘ୍ର ଅସ; ପ୍ରେଷେଛ

ଶେଷ ହେଲଣି, ଗୋଡହାତ ଧୋଇ ଆସ ଭୋଜନ କରିବ।
ଅଧବୁଢ଼ା ଅସି ହେଲ ଥିବ। ପଞ୍ଚହାଁସର ଗରଧା ଅକଯାଏ
ଯାଇନାହଁ ?

କୃଷ୍ଣ— ସୁନ୍ଦରୀ ! ଏହା ଅତି ପରିହାସ ନୁହେ; ବଡ଼
ଗୁରୁତର କଥା; ଭୀଷ୍ମଙ୍କର ପଣ ଶୁଣିବା ସମୟରୁ ମୋର
ବୁଦ୍ଧି ନଷ୍ଟ ହୋଇଅଛୁ, ତୁମ୍ଭମାନଙ୍କୁ ସେ ପ୍ରଳୟ ଅଗ୍ନିରୁ
କୌଣସି ପ୍ରକାରେ ରକ୍ଷାକରି ପାରିବ ନାହଁ; ସୁତରାଂ ସମସ୍ତେ
ମିଳି ମୋତେ ବିଦାୟ ଦିଅ, ମୁଁ ଚାଲିଯିବ।

ଦ୍ରୌପଦୀ— ( ସ୍ୱଗତ ) ଦୁଃଶାସନପୀଡ଼ିତା, ଦୁର୍ବାସା-
ଶାପବିମୁକ୍ତା ପାଣ୍ଡବଘରଣୀ ଙ୍କ ଏକଥା ବିଶ୍ୱାସ କରେ ?
( ପ୍ରକାଶ୍ୟେ ) ଲବଣିଖିଆ ହୃଷିକେଶ ! !

" ଛି ଛି ଏତେ ନଠକୁଟିଆ କଗୋ " ବୃତ୍ତେ।

କେତେ ଖେଳ ଖେଳୁଥି ବନେ କୁଞ୍ଜ ବିହାରୀ, ପଞ୍ଚହେଲ
ଆସି, କହଁଅଛ ବସି ଢଂସଭଙ୍ଗୀରେ। ଘୋଷା। ଉପାସ୍ୟ ସଜି
ମୁଖରେ ଆସ ଆସ ବେଗକରି, ଭୋଜନର ସମୟ ହେଲା
ମୁରଲୀ ଧାରି !। ୧। ହାତଧରି ନନ୍ଦପାଇ କରଯେବେ ଗୋପନାରୀ
ଏହୃଦରେ ବାଲ୍ୟ ଜଳେ ଯମୁନା ତଟୀ। ୨। କୁରୁସଭା ତଳେ
ହରି କୋଟିବସ୍ତ୍ର ଦେଇକରି, ରଖିଥିଲ ଅବଳା ମାନ ଅକ
ଏପରି। ୩। ଦୁର୍ବାଶା ଶାପୁଁ ଉଦ୍ଧରି, କଟକେ ଗୁପତେ ମାରି
ରଖିଥିଲ ଗ୍ରୀବରେ ଅଜ ଯିବ କାପରି ?। ୪। ମୋରଯେତେ
ପର୍ବ ଅରି ପୋଡ଼ିଯିବେ ତୃଣପରି, ସେହିକଥା ନ୍ମରଣ ଅଛି
ଗୁରୁ ଗୁରୁଥି। ୫

ଏ ମ ପଦ ଗୀତ ଗାଇ ଗାଇ ଦ୍ରୌପଦୀଙ୍କର ପ୍ରସ୍ଥାନ ।

ଯୁଧି— କାଲ ଅତ୍ର ରକ୍ଷାନାହିଁ; ପୂଜ୍ୟପାଦ ପିତାମହ ପାଣ୍ଡବ ନିଧନ ନିମନ୍ତେ ପ୍ରତିଜ୍ଞାବଦ୍ଧ ; ପାଣ୍ଡବ ସହାୟ କେଶବଙ୍କର ପାଣ୍ଡବମାନଙ୍କପ୍ରତି ବଳୀସ ; ଏ ଉଭୟ ବଧ-ବନ୍ଧୁ ଗୋଟିଏ ସମ୍ଭାଳିବା ଦୁଷ୍କର , ଏକକାଳୀନ ଯୋଡାଏ ଅଲୌକିକ ବିପଦର ଗହ୍ୱରେ ଆମ୍ଭମାନଙ୍କର କି ଅତ୍ର ରକ୍ଷାଅଛି ।

" ମରଣ ବିନା କଲ୍ୟବରେ ନଯିବ ଜମୁନା " ବୃତ୍ତେ ।

ଭାଜିଲି ଅଲ୍ପ ପାଣ୍ଡବର, କାଲି ରକ୍ଷାନାହିଁ ଦାମୋଦର ।୦

( ଧ୍ରୁବ )

ଛୁଟିଅଛି ହେ ଶ୍ରୀପତି, କଠୋର ଭୀଷ୍ମର ପଣଅତି

ତୁମ୍ଭେଥାଉଁ ହେବ ଦୁର୍ଗତି ଏପର ନଥିଲା ଧାରଣା ସ୍ୱପନର ।୧

ବାନ୍ଧିଥିଲି ମୁଁ ସାହସ, କରୁଣା କଣାରେ କରୁଅଛ

ଆଶା ନପୂରିଲା ବିପତ୍ତି ପଡ଼ିଲା

ଅଶ୍ରାଜେହ ନାହିଁ ବଶେମୋର । ୨

ତ୍ରୁଟି ଦିଏପଦେ ଅମ୍ଭଙ୍କୁ ଗଲେଯାଉଅଛ ଦ୍ୱାରକାକୁ

ଥିଲଛିର ... ଣ ଏହାକି ମୋହନ

ଦେଇ ଅଶ୍ୱାସନା କରଦୂର । ୩

ଭୀମ— ( କ୍ରୋଧରେ )

ଜ୍ୟେଷ୍ଠଭ୍ରାତ ମହାରାଜ ପାଣ୍ଡବ ପ୍ରଧାନ

ଚରଦନ ଧର୍ମ୍ମ ଧର୍ମ୍ମ ଏହ ସବୁକାର୍ଯ୍ୟ

ପଣ୍ଡୁକର ହୁଅଉଛ ଅଶେଷ ଅନର୍ଥ ;

ତୁମ୍ଭର ସେ ଧର୍ମ୍ମନୀତି ନତଶିରେ ମାନି

ବାଣ ହରଣ

ଭୁଞ୍ଜୁଅଛୁଁ ନତ୍ୟ ନିତ୍ୟ ଦୁର୍ବହ ବେଦନା ।
ଧର୍ମ୍ମ ଯୋଗୁଁ କେଶବନ୍ଧ ଥିଲେ ଚିରସଙ୍ଗୀ
ପଳାନ୍ତି କିମ୍ପାଇଁ ଆଜ ଦଗାଦେଇ ଶେଷେ ?
ହେ କଣ୍ଠି କରିଥାଉ ଭରସା କାହାର
ନିଜ ବାହୁବଳେ କର କୌରବ ବିନାଶ ;
ଲକ୍ଷବିନ୍ଧି ପାଇଥିଲ କୃଷ୍ଣା ସ୍ୱୟମ୍ବରେ ,
ଭଦ୍ରାଲାଗି ଯଦୁସେନା ଦଳିଲ ଅହବେ ,
ଦେବଗଣ ଜିଣିଲ ଖାଣ୍ଡବ ଦହନ ,
ବାହୁଯୁଦ୍ଧେ ତୁଷ୍ଟକଲ ଦେବ ମହେଶ୍ୱର ,
ନିବାତକବଚ ନାଶି ତୋଷିଲ ବାସବେ ,
ଗୋଗୃହେ ଜିଣିଲ କୁରୁ ବାହିନୀ କୌଶଳେ ,
ଗନ୍ଧର୍ବର ହସ୍ତମୁକ୍ତ କଲ ସୁଯୋଧନେ ,
ଏବେ ସେ ପାମରେ କର ସସୈନ୍ୟେ ବିନାଶ
ଯୁଧିଷ୍ଠିରେ ରାଜଛତ୍ର ଦିଅ ବୀରବର ;
ବନ୍ଧୁ ବାନ୍ଧବର ଅଛି ଆଶା ରଖନାହିଁ
ପର କେଉଁକାଳେ ଭାଇ ହୁଏକି ନିଜର ?
ସବୁକାଳେ ଜାଣ । ଏହା ଯେ ପର ସେ ପର ।

ଯୁଧିଷ୍ଠିର ଃ— ( ଭୀମର ପିଠିରେ ହାତବୁଲାଇ )
ଧୈର୍ଯ୍ୟଧର ଭାଇ ! ଏହା କ୍ରୋଧକାଳ ନୁହେ ,
ସାଧୁ ଯେ ସେ କ୍ରୋଧ ବଶେ ହୁଅଇ ଚଣ୍ଡାଳ,
ଭକ୍ତବନ୍ଧୁ ଜନାର୍ଦ୍ଦନ ଭକ୍ତର ଆରତ
ନିଶ୍ଚୟ ଫେଡ଼ିବେ ତେଣୁ ଚିନ୍ତାମନ୍ଦ ଦେଶ ।

କୃଷ୍ଣ ବନ୍ଦ୍ୟମାନେ ଯଦି ପାଣ୍ଡବ ମସ୍ତକେ
ପଡ଼ିବ ବିପଦ ଯିବ ସମ୍ପତ୍ତିକି ଶୁଖି ;
ନିରନ୍ତର ଲକ୍ଷ୍ୟରଖି ସେ ରଙ୍ଗ ଚରଣେ
ଅଟଳ ବିଶ୍ୱାସେ ଏହି କର୍ମ୍ମମନ୍ତ୍ର ବନ୍ଦେ
ଧର୍ମ୍ମମାର୍ଗେ ପ୍ରଧାବିତ ହୁଅ ବୃକୋଦର ।

ସ୍ତବ ।

" ମଦନ ମୋହନ ମୋହୁଦ ଚନ୍ଦନ " ବୃତ୍ତେ ।

ଅନାଥବାନ୍ଧବ ଦରିଦ୍ରଭବ ଦୁଃଖଦଶା ଦୂରକାରି ହେ
ଜନ୍ମମଥୁହାରି , ମୁକୁନ୍ଦ ମୁରାରି , ଗତିମୁକ୍ତି ଗିରିଧାରି ହେ

( ଘୋଷା )

ଆରତିଭଞ୍ଜନ ଭକତଜୀବନ ଗୋପୀଧନ ବଂଶୀଧାରି
ଅଗତିର ଗତି ପଡ଼ନ୍ତି ବିପତ୍ତେ ରକ୍ଷାକର ଦଇତାରି । ୧
ତ୍ରିଗୁଣ ଅଧାର ହେ ରୁଦ୍ରଶଙ୍କର ସୃଷ୍ଟିସ୍ଥିତିଲୟକାରି
ଚନ୍ଦ୍ରମା ତପନ ନୟନ ସନାତନ ଅନନ୍ତଶଙ୍ଖଚକ୍ରଧାରି । ୨
ତୁମ୍ଭେ ହୁତାଶନ ସଲିଳ ଶୟନ ନିରଞ୍ଜନ ନରହରି
ଜଗତଜୀବନ ଶରଣରକ୍ଷଣ ସକଳବିପଦହାରି । ୩
ଅହଲ୍ୟା ତାରିଲ ଗଜ ଉଦ୍ଧରିଲ କଉସ୍ତୁଭମଣିଧାରୀ
ତେଣୁନାମ ତବ ବିପଦବାନ୍ଧବ ପାଣ୍ଡବେ ରଖ ଉଦ୍ଧରି । ୪

କୃଷ୍ଣ— ଧର୍ମ୍ମବଳ ବଳ ଏକା ଏବିଶ୍ୱ ଜଗତେ
ତୁଚ୍ଛତହିଁ ଯାନ୍ତ୍ରଶକ୍ତି ; ସେହି ଧର୍ମ୍ମବଳେ
ବଳୀୟାନ ବିଶ୍ୱଜୟୀ ତୁମ୍ଭେ ପାଞ୍ଚଭାଇ ,
ସେହିଧର୍ମ୍ମ-ସମ୍ପଦରେ ହୃଦୟ-ଭଣ୍ଡାର—

ପୂର୍ଣ୍ଣହେବ, ନ ରହେ ; ବଧିବ ତୁମ୍ଭକୁ
ନାହିଁ ଶକ୍ତି ଏ ଅଖିଳ ବ୍ରହ୍ମାଣ୍ଡେ କାହାର ;
ଯଥାମୁହିଁ ସେହିପରେ ତୁମ୍ଭେ ପାଣ୍ଡୁଜଣ ;
ଗଙ୍ଗାର ନନ୍ଦନ ? ତୁଚ୍ଛଅଟ, ବ୍ରହ୍ମାଣ୍ଡିବେ
ନାହିଁ ଅଧିକାର ତୁମ୍ଭେ ତ୍ରିଲୋକ ବିଜୟୀ ;
ନାହିଁ ମୃତ୍ୟୁ ଧରଣୀରେ ପଞ୍ଚପାଣ୍ଡବର
ଯାବତ ତୁମ୍ଭର ଶତ୍ରୁ ନୋହିବ ନିଧନ
ଯାବତ ଦୈତ୍ୟଙ୍କ ରାଜ୍ୟ ନଲଭ ରାଜନ !
ଯାବତ ତୁମ୍ଭକୁ ଘେନ ବୈକୁଣ୍ଠେ ନ ଯିବି
ତାବତ ନିଶ୍ଚିନ୍ତ ନୁହେ ଧରଣୀରେ ମୁହିଁ ।
ଧରଣୀରେ ରହିମୋର ତୁମ୍ଭେ ପାଞ୍ଚଭାଇ
ଛାଡ଼ଚିନ୍ତା ଧର୍ମ୍ମରାଜ ଦୃଢ଼ବାକ୍ୟ ମୋର ।

ଅସନ୍ତି ( ଏହାକହି କୃଷ୍ଣ ସମସ୍ତଙ୍କୁ ଆଲିଙ୍ଗନ କରି ) ତେବେ ମହାରାଜ ! ଆପଣ ଅର୍ଜ୍ଜୁନ ବ୍ୟତୀତ ଅନ୍ୟ ଭାଇମାନଙ୍କ ସଙ୍ଗରେ ଶିବିରର ଅନ୍ୟାନ୍ୟ କାର୍ଯ୍ୟରେ ତତ୍ତ୍ୱ ଯାଇ ନିଅନ୍ତୁ ।

ଅର୍ଜ୍ଜୁନ କୃଷ୍ଣ ବ୍ୟତୀତ ସମସ୍ତଙ୍କର ପ୍ରସ୍ଥାନ ।

କୃଷ୍ଣ—( ଅର୍ଜ୍ଜୁନ ପ୍ରତି ) ସଖେ ! ଶୁଣ !

" ସେ ଗଧା ବାଉଳ ବୃତ୍ତେ "

ଯାଅ ଅରଜୁନ ମାୟା ଦୁର୍ଯ୍ୟୋଧନ ବେଶହୋଇ ଭୀଷ୍ମ ନିକଟକୁ, ଏହିକ୍ଷଣେ ଅଣ ଛଳ ପାଞ୍ଚବାଣ ନେଇଥିଲେ ନିଜ ପରାଣକୁ ।। ଯାଅ ତ୍ୱରାଅତି ।। ଶର୍ବସ୍ୱ ସହିକେ ନାହିଁ ମତି ,

ବହୁଚନ୍ଦ୍ରା ପର କରିଅଛୁ ସ୍ଥିର ଏଥିଁବଲ ନାହିଁ ସୁକ୍ଷ୍ମଗାଛ । ୧
ମାୟୀ ଦୁର୍ଯ୍ୟୋଧନ ବେଶ ସୁକଠିନ ଯାଇଅଛେ ଶତ୍ରୁ ଶିବିରକୁ
ଆଣ ମାଗିବାର ମୁକୁଟ ରାଜାର ନମିଲଇ ଯାହା ବାସବକୁ ॥ ଅଛୁ
ରହିତନ୍ତି ॥ ତ୍ରିଭୁବନେ ଯାହା ଦେଖା ନାହିଁ, ସେ ଅନଘମଣି-
ମୁକୁଟ ଫାଲ୍ଗୁନି ଅଣିଲେ ରଚିବ ବେଶ ମୁହିଁ । ୨

ନାହିଁକି ସ୍ମରଣ ପୂର୍ବେ ଚନ୍ଦ୍ରସେନ ବାମାଗଣସହ ଦୁର୍ଯ୍ୟୋ-
ଧନେ, ବାନ୍ଧିନେବା ବେଳେ ଧର୍ମ ଆଜ୍ଞା ବଳେ ମୁକୁଳାଇ ଥିଲ
କାମ୍ୟବନେ ॥ ପ୍ରୀତହୋଇତନ୍ତି ॥ ଯାଚିଥିଲା ବର କୁରୁସାଇଁ,
ପ୍ରୟୋଜନେ ନେବି କହିଛ ବାସବି ସେବରେ ମୁକୁଟ ଅଣଯାଇ ।

ଦୁର୍ଯ୍ୟୋଧନ ବେଶେ ନାଇ ଭୀଷ୍ମପାଶେ ଛଳିଅଣ ଅଜ
ମୃତ୍ୟୁଶର, ଭାଙ୍ଗି ଶତ୍ରୁ ଟାଣ ସାଧହେ କଲ୍ୟାଣ ଏହାହିଁ ଉପାୟ
ସାରବର ॥ ପଛେ ପଛେ ଯାଅ ॥ ତୁମ୍ଭକୁ କହିବି ରକ୍ଷାମୁହିଁ,
ଶତଧାଧା ହେଲେ ଉତ୍ତାରିବ ହେଲେ ଯାଅ ଯାଅ ସାର
ଚିନ୍ତାନାହିଁ । ୩

ଅର୍ଜୁନ— ଭଗବାନ ! ପରସ୍ପରମଧ୍ୟରେ ଝଣଗୋଳ ଚଳି-
ଅଛି, ଏପରି ଅବସ୍ଥାରେ ଶତ୍ରୁଶିବିରକୁ ଯାଇ ଏଭଳି ପ୍ରାର୍ଥନା
ପୂରଣ ହେବତ ?

କୃଷ୍ଣ— ସୁନ୍ଦର ଅପ୍ସରା ଦେଖିବାର ସମୟ ବର୍ତ୍ତମାନ
ନୁହେଁ, ମୁଁ ସେ ବିଷୟରେ ଅନେକ ଚିନ୍ତାକରି ବ୍ୟବସ୍ଥା
କରିଅଛି, ତୁମ୍ଭେ କାଳବିଳମ୍ବ ନକରି ଯାଅ, ପଛେ ଯାହା
କରି— ଟି ମନରେ କହିବି, ଶୀଘ୍ରଯାଅ ।

ଅର୍ଜୁନ — ମାୟାଧର ଶ୍ରୀକୃଷ୍ଣଙ୍କ ଆଦେଶ ଶିରୋଧାର୍ଯ୍ୟ ।

## ଅର୍ଜୁନର ପ୍ରସ୍ଥାନ

କୃଷ୍ଣ—( କିଛି ସମୟ ପରିକ୍ରମଣ କରି ) ଦେବବ୍ରତ ! ମୋର ପରମଭକ୍ତ ଦେବବ୍ରତ ! ଅଟଳସଂଯମୀ ଦେବବ୍ରତ ! ତୁମ୍ଭ ସ୍ୱବୀର୍ଯ୍ୟର ବଳରେ ତୁ ବଳୀୟାନ ଏକଥା ଯେ କହେ ସେ ତୋତେ ଜାଣେନାହିଁ; ସତତ ଚିହ୍ନିଲ, କର୍ମମାତ୍ର ଏ ମର୍ତ୍ତ୍ୟମଣ୍ଡଳରେ ଜନ୍ମି ତ୍ୟାଗର ପରମ ମନ୍ତ୍ରରେ ଦୀକ୍ଷିତ ହୋଇ ପ୍ରାଣର ଦୁର୍ଦ୍ଦମ୍ୟ ଷଡରିପୁଙ୍କୁ ଜୟ କରି ମାନବ ଜୀବନରେ ଯେଉଁ ଅଲୌକିକ ପ୍ରତିଭା ପ୍ରତିଫଳିତ କରିଅଛ ସେଥିରେ ମୁଁ ସତତ ମୁଗ୍ଧ; ଏ ଆଦର୍ଶ ଦେବଲୋକରେ ସୁଦୁର୍ଲ୍ଲଭ । ଏ ବୀରତ୍ୱ, ଏ ସାତ୍ତ୍ୱିକ ପ୍ରତିଭା ବ୍ରହ୍ମାଣ୍ଡରେ ଅତୁଳନୀୟ । ( ଚିନ୍ତିତଭାବେ ଟିକିଏ ନୀରବ ରହି ) ଇଚ୍ଛାମୃତ୍ୟୁ ? ନା, ଏ ଭୀଷଣ ମରୁଭୂମି ଶତଦଳ ପଦ୍ମର ସ୍ଥାନ ନୁହେଁ, ନନ୍ଦନଉଦ୍ୟାନମଧ୍ୟବର୍ତ୍ତିନୀ ସୁର-ଧୁନୀ ଏହାର ଯୋଗ୍ୟ ଆଧାର । (ଧୀରେ ଧୀରେ ପ୍ରସ୍ଥାନ)



# ୧ମ ଦୃଶ୍ୟ ।

—☙❧—

ବନ ମଧ୍ୟରେ ଜ ୪ ଣ ଅପସ୍ୱରାଙ୍କର ବିହାର ଓ ନୃତ୍ୟ ।

୧ମ— ସଖି ! ଦେଖତ କି ସୁନ୍ଦର ଦେଶ, ମନେହୁଏ ଅମ୍ଭ-ମାନଙ୍କର ସ୍ୱର୍ଗଅପେକ୍ଷା ଏହାର ରମଣୀୟତା ଅଧିକ ; ଏଭଳି କମନୀୟ ସ୍ଥାନଟିକୁ ବିଧାତା ତାହିଁକି ଯେ ଏ ମର୍ତ୍ତ୍ୟଲୋକରେ ରଖିଲେ କିଛି ବୁଝାଯାଉ ନାହିଁ । ପ୍ରକୃତରେ ଏ ସ୍ୱର୍ଣ୍ଣପ୍ରସୂ ;

୨ୟ—ପ୍ରିୟସହି ! ଏଦେଶର ମହିମା ପୃଥିବୀରେ ଅତୁଳ-ନୀୟ ; ଏ ଭୂମିର ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ଲୀଳାମୟ ଶ୍ରୀହରି ବୈକୁଣ୍ଠଧାମ ତ୍ୟାଗ କରି ବାରମ୍ବାର ଅବତାର ଗ୍ରହଣ କରି ଏ ଭୂମିକୁ ପବିତ୍ର କରିଅଛନ୍ତି । ସୀତା ସାବିତ୍ରୀ ପ୍ରଭୃତି ସତୀ-ଶିରୋମଣି ରମଣୀଗଣ ଏଠାରେ ଜନ୍ମଗ୍ରହଣ କରି ନିଜନିଜ ସତୀତ୍ୱପ୍ରଭା ଦେବଲୋକ ପର୍ଯ୍ୟନ୍ତ ବିସ୍ତାର କରିଅଛନ୍ତି । ବ୍ୟାସ, ବଶିଷ୍ଠ, ବାଲ୍ମିକି ପ୍ରଭୃତି ମହର୍ଷି ମାନଙ୍କର ଜନ୍ମ ଏହି ଭୂମିରେ ।

୩ୟ— ଅହା ! ଏହି ଦେବବାଞ୍ଛିତ ଭୂମିର ରମଣୀୟତା ଦେଖିଲେ ମନ ସ୍ୱତଃ ଉଲ୍ଲସିଉଠଇ ; ନୀରସ ପ୍ରାଣ ମଧ୍ୟ ଏଭଳି ସ୍ଥାନରେ ସରସ ହୋଇଯିବ ; ଆହା ! କି ପ୍ରାଣଭରା ତୃପ୍ତି !! ;

(ସକଳେ ଗାଇବେ,)

ଗାଅଲୋ ଭାରତ ଯଶ ମଧୁରତାନେ,
ଢାଳସୁଧା ପ୍ରାଣେ ପ୍ରାଣେ ଚିର କାନନେ (୦)

ହୀନାର ଭାରତଭୂଇଁ ସରଗେ ଏପରି ନାହିଁ, ଭୁବନ ବାଞ୍ଛିତ ଦେଶ ଅପଣା ଗୁଣେ ; ଶତ ଶତ ସ୍ରୋତସ୍ୱିନୀ ବହେ ଅହ-

ରମ ଗନ୍ଧ ପୁଲକେ ପୁରାଇ ପ୍ରାଣ କଲ ବସନ୍ତେ । ୧
ଦେଶ୍ୟଦୃଷ୍ଟି ହଦା ସତୀ, ତରୁକୁଳ ଫଳବତୀ ଅଭାବ ଅଭ୍ରବର୍ଷିନା!
<ସୁଖ ସ୍ଥାନେ ; ସୁନ୍ଦର ସୁମନରମ୍ୟ ସଦା ପରିମଳମୟ ଶବଥ
ତରଣେ ଶୋଭେ ଉଦ୍ୟାନ ବନେ । ୨ । ବସନ୍ତେ ପ୍ରକୃତିସତୀ,
ଧରେ ମୋହନ ମୂରତି , ମଳୟ ମରୁତ ବହେ ମୃଦୁ ସ୍ୱନନେ;
ମଧୁର ସ୍ୱରରେ ଗାନ କରନ୍ତ ବିହଙ୍ଗଗଣ ହୃଦି ଏ ଚକିତଦେହେ
ବହି କାନନେ । ୩

୪ର୍ଥ:— କା—ନୁ

ଜନ୍ମୁ— କାନୁ କଅଣ ? ଗୀତଟାକି ତୋର ମନକୁ ଆସିଲା
ନାହିଁ ? ଯଦି ଅସୁନ୍ଦର ହେଲା ଭ ଗୋଟିଏ ବୋଇଲୁ ଶୁଣିବା,
୪ର୍ଥ— ଅଛ ସୁର ଧର ତେବେ ,

"ଦୁଃଖ ମୋ ସମେ ସତେ କାହିଁ ନାହିଁ" ସୁରେ
ଦୁର୍ଭାଗ୍ୟ ଦେଶ ସନ୍ତାନ , କଳଙ୍କ-କାଳି ଭାରତେ ଲାଗିଗଲାଣି
[ ଧ୍ରୁବ ]

ଚେତନର ଅଦ୍ୟ ଲୀଳା , କୁରୁକ୍ଷେତ୍ର ରଣ ମେଳା
ଯିବ ବୀରତ୍ୱ ହେବେକ ସୁନାମ ଠାଣି ॥
ଭାଇ ଭାଇ କଳି ଗୋଳ ଘରେ ଚଳେ ଅସିଭାଲ
ଅଜ ଏକତା ବନ୍ଧନ ଛିନ୍ନ ହେଲାଣି । ୨
ସୁଜଳା ସୁଫଳା ଭୂଇଁ କୌସ୍ତୁଭ ରତ୍ନ କାହିଁ
ହେବ ହତଶ୍ରୀ ଭାରତ ପୂତ ଅବନୀ । ୩
ଭାରତର ମେରୁଦଣ୍ଡ ଭାଙ୍ଗି ହେବ ଖଣ୍ଡ ଖଣ୍ଡ
ଅର୍ଦ୍ଧ୍ୟ ସମ୍ପଦ ସମ୍ମାନ ବୁଡ଼ିବ ପୁଣି । ୪

ବାଣହରଣ ।

ଅମର ବାଞ୍ଛିତ ଦେଶ    କଳୁଷେ ହୋଇବ ଧ୍ୱଂସ
ଚିର ବିଷାଦେ ବିକ୍ଷିନ ଆର୍ଯ୍ୟ ଜନନୀ । ୫

୧ମ—ଓହୋ ! ବିଧାତା ଏ ଦେବଭୂମି ଭାରତର ଭବିଷ୍ୟ-
ତକୁ ଏଭଳି କରି ରଖିଅଛନ୍ତି ? ତେବେ ଏପରି ସ୍ଥାନରେ
ଅଧିକ ସମୟ ରହିବା ସୁନ୍ଦର ନୁହେଁ । (ସମସ୍ତେ ପ୍ରସ୍ଥାନ)

ଅଦୃଶ୍ୟ କୁମାରୀଙ୍କ ଗୀତ

ମରୁଭୂମେ ଆଜ କୁଞ୍ଜ କାନନେ
କୋକିଳ କଳଗୀତ ଖେଳେ ସୁତାନେ [ ୦ ]
ଧରଣୀମଣି ପାଣ୍ଡବର    ହସ୍ତିନେ ଧର୍ମ ହେବ ଅସାର
ଭାଳନ୍ତ କୁରୁପତି ନୀରସ ପ୍ରାଣେ । ୧
ଭଙ୍ଗୁର ଭବ ସୁଖପାଇଁ  ମାଟିବ କାଳ ଜୀବନେ ଭାଇ
ଏ ଚିନ୍ତା—ହଳାହଳ ଘାରେ  ଜୀବନେ । ୨
ସଙ୍କେଳ ସ୍ୱପ୍ନ ନିଦ୍ରାକୋଳେ ଚନ୍ଦ୍ରିକାଧୌତ ଧରଣୀତଳେ
ବିଷମ ଝଡ ବହେ  ରାଜନ ମନେ । ୩
ପ୍ରାଣର ସଖା ଅଙ୍ଗପତି    ନିରେଖି ନୃପ ମାନସ ଗତି
କାଟେଣ ପଶିଛନ୍ତି  ଚକିତ ପ୍ରାଣେ । ୪
ଅର୍ଜ୍ଜୁନବୀର  ଆଗମନ    ସମ୍ବାଦ ଶୁଣି ହସ୍ତିନାଲୋଣ
ଉପେଛି ସିଂହାସନ ବିକ୍ରେ ବଦନେ । ୫



# ଷଷ୍ଠ ଅଙ୍କ

———

୧ମ ଦୃଶ୍ୟ          କୌରବ ଶିବିର

( ଦୁର୍ଯ୍ୟୋଧନ ବାରଣ୍ଡାରେ ପରିକ୍ରମଣ କର )

ଦୁର୍ଯ୍ୟୋଧନ—କାଲି ରଣଜୟ ସୁନିଶ୍ଚିତ, ପିତାମହଙ୍କର ପଣ ହୁମାଦ୍ରିପରି ଅଟଳ । ଆଉ ପାଣ୍ଡବଙ୍କର କୌଣସି ଉପାୟରେ ରକ୍ଷା ନାହିଁ । ନିର୍ବିରୋଧରେ ସିଂହାସନ ଭୋଗ କରିବ । କି—ନ୍ତୁ—ପାଣ୍ଡବହୀନ ସିଂହାସନ ଯେ କେତେଦୂର ସୁଖପ୍ରଦ ହେବ, ତାହା ବୁଝି ପାରୁନାହିଁ; ( ଚିନ୍ତିତ ହୋଇ ) ଓହୋଃ ! ମନୁଷ୍ୟର ପ୍ରବୃତ୍ତି କେତେ ଶ୍ରେଷ୍ଠ ? କେତେ ହୀନ ? ନିଜର ସ୍ୱାର୍ଥ—ଥାଉ ସେ କଥା , ବର୍ତ୍ତମାନ ସେ ଚିନ୍ତା ନିଷ୍ପ୍ରୟୋଜନ ( କ୍ଳାନ୍ତଭାବେ ଆସନରେ ବସିବା )

କର୍ଣ୍ଣର ପ୍ରବେଶ

କର୍ଣ୍ଣ—(ଆଶ୍ଚର୍ଯ୍ୟରେ) ସଖା ! ଏ କ'ଣ ? ଏଭଳି ଚିନ୍ତାମଗ୍ନ କାହିଁକି ? ବଦନରେ ନୈରାଶ୍ୟ ତଥା ବୈରାଗ୍ୟର ଛାଇ କାହିଁକି ଦେଖା ଯାଉଅଛି ? ଆଉ ଚିନ୍ତାର କୌଣସି କାରଣତ ମୁଁ ଦେଖି ପାରୁନାହିଁ, ଆପଣଙ୍କର ଯାବତ ଅରିଷ୍ଟ ଯାବତ ଜଞ୍ଜାଳ ସମସ୍ତ ମହାମତି ଭୀଷ୍ମଙ୍କର ପ୍ରତିଜ୍ଞାରେ ଖଣ୍ଡନ ହୋଇ ଯାଇଅଛି ; ଏଣିକି ନିର୍ଦ୍ଦ୍ୱନ୍ଦ୍ୱରେ ସସାଗରାଧରା ଭୋଗ କରନ୍ତୁ ।

ଦୁର୍ଯ୍ୟୋଧନ— ଯଥାର୍ଥ କହୁଅଛ ସଖେ, ମହାମତି ଭୀଷ୍ମଙ୍କର ପ୍ରତିଜ୍ଞା ଅନ୍ୟଥା ହେବାର ନୁହେ; ସୂର୍ଯ୍ୟଦେବ ପଶ୍ଚିମରେ ଉଦୟ ହୋଇ ପାରନ୍ତି , ସପ୍ତସମୁଦ୍ର ବାରିଶୂନ୍ୟ ହୋଇପାରେ,

କିନ୍ତୁ ଭଗବାନ ଜାଣନ୍ତି ଭୀଷ୍ମଙ୍କ କଥାର ଅନ୍ୟଥାଚରଣ କଦାପି ହୋଇନାହିଁ, ହେବନାହିଁ; ଭୃଗୁଙ୍କର କଥାର ଅନ୍ୟଥା-ଚରଣ ହେବ ନାହିଁ କେବଳ ଏହି କଥା ନେଇ ମୋର ଚିନ୍ତା-ଚିନ୍ତାନ୍ୱିତ ହେ ସଖେ! ସେ ଏକପ୍ରକାର ଚିତା ଅନ୍ତରର ଅନ୍ତରତମ ପ୍ରଦେଶରେ ନେଇ ଶାଖା ପ୍ରଶାଖା ଧରି ପ୍ରଜ୍ଜ୍ୱଳିତ ହେଉଅଛି, ଶୁଣନ୍ତୁ ।

“ମନର ବେଦନା ସହୁ କାଏଁ କହିବ ଯାଇ” ସୂତେ

ସାମାନ୍ୟ ବ୍ୟକ୍ତିର ପରି ଭାବିବ ପ୍ରିୟଭାଇ, ଏହି ଚିନ୍ତା ମିଛ
ମୋର ପଣ ଅଟଇ । ୦ । ମନ୍ତ୍ରପୁର ବହ୍ନି ଏହି ଧର୍ମ ପ୍ରାଣ
ପାଞ୍ଚଭାଇ, ଯତନ କରିଣ ବହ୍ନି ଅନଳେ ଫିଙ୍ଗିଲି ନେଇ । ୧
କାଳି ନିଶ୍ଚେ ହେବ ରଣ ପାଣ୍ଡବର ନାହିଁ ତ୍ରାଣ ଭାଇମାନ୍ କଳ-
ଙ୍କରେ କଳଙ୍କିତ ହେବ ମୁହିଁ । ୨ । ଭାବିଥିଲି କେତେ ଦିନ
ପାଣ୍ଡବ ସଙ୍ଗେ ଏସନ, ଲାଗିଥିବ ନାନା ରଙ୍ଗ ମିତ, ତାହା
ହେବ ନାହିଁ । ୩ । ତେଣୁ ମୁଁ ଜଣାଣ କରେ ଜଗତ ପତି
ପଦ୍ମରେ, ଲୋକାନ୍ତର କର ମୋତେ ରଖନ୍ତୁ ମୋ ପାଞ୍ଚଭାଇ । ୪

କର୍ଣ୍ଣ— ଓଃ ହୋ! କି ଆଶ୍ଚର୍ଯ୍ୟ ଭୀମ ଊଷର ଦେଶରେ,
ପ୍ରବାହିତ ହେଲାଣି ମନ୍ଦାକିନୀ ଧାରା!!
( ପ୍ରକାଶ୍ୟେ ) ପ୍ରିୟ ସଖା! ମହାରାଜ ! କୌରବ ପ୍ରଧାନ
ବାସନା ତୁମ୍ଭର ହେବ ସର୍ବଥା ସଫଳ
ରଖିଯିବ ମହାକୀର୍ତ୍ତି ଏମନ୍ତ ମଣ୍ଡଳେ
ଯାବତ ଚନ୍ଦ୍ରାର୍କ ତାହା ଗାଇବେ ସକଳେ

ଦ୍ୱାରୀର ପ୍ରବେଶ ।

ଦ୍ୱାରୀ— ମହାରାଜ କୁରୁପତିଙ୍କର ଜୟ ହେଉ ।

ଦୁର୍ଯ୍ୟୋ:— କେ ? ଦ୍ୱାରି ? କିସମ୍ବାଦ ?

ଦ୍ୱାରି-ମହାରାଜ ! ମଧ୍ୟମ ପାଣ୍ଡବ ମହାବୀର ଅର୍ଜ୍ଜୁନ ସାକ୍ଷାତାଭିଳାଷୀ ହୋଇ ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ଅଛନ୍ତି ।

ଦୁର୍ଯ୍ୟୋ— ପ୍ରିୟ ଭାଇ ଅର୍ଜ୍ଜୁନ ଆସିଅଛି ? ବଡ଼ ଆନନ୍ଦର କଥା, ବସିବା ନିମନ୍ତେ ଆସନର ବ୍ୟବସ୍ଥା କରି ଦେଇ ଥିଲୁତ?

ଦୂତ—(ମୁଣ୍ଡରେ ହାତ ବୁଲାଇ) ଆଜ୍ଞା, ଆଜ୍ଞା, ଆଜ୍ଞା !

ଦୁର୍ଯ୍ୟୋ—ମୂର୍ଖ ! ଜାଣୁନା ? ସେ କେ ? ଯୁଦ୍ଧ ସମୟରେ ଯୁଦ୍ଧ, ବର୍ତ୍ତମାନ ମୋର ଭାଇ ମୋର ପାଖକୁ ଆସିଅଛି , ସଖେ ! ଏଭଳି କାଣ୍ଡଜ୍ଞାନହୀନ ମୂର୍ଖଗୁଡ଼ାଙ୍କ ହାତରେ କାର୍ଯ୍ୟ ରହିଲେ ପରିଣାମରେ ଏହିପରି ଅପଦସ୍ତ ହେବାକୁ ପଡ଼େ ; ଆସନ୍ତୁ ( ଏହା କହି କର୍ଣ୍ଣସଙ୍ଗରେ ଦ୍ୱାରଦେଶ ପର୍ଯ୍ୟନ୍ତ ଯାଇ ଅର୍ଜ୍ଜୁନଙ୍କୁ ଦେଖି ) ଭାଇ ଅର୍ଜ୍ଜୁନ ! (ଅର୍ଜ୍ଜୁନର ପ୍ରଣାମ କରିବା ଓ ସମୀଚୀନୋଚିତ ପରସ୍ପର ବକ୍ଷ ଲଗାଲଗି ହୋଇ ଦୁର୍ଯ୍ୟୋଧନ ଅର୍ଜ୍ଜୁନର ହସ୍ତଧରି ସେହି ଆସନରେ ଉପବେଶନ କରିବା ) ।

ଦୁର୍ଯ୍ୟୋଧନ— ଭାଇ କରୀଟି ! ଏ ଗଭୀର ରଜନୀରେ କି କାର୍ଯ୍ୟ ନିମନ୍ତେ ଆସିଲ ? ଭୀମ ଓ ମାଦ୍ରିସୁତଦ୍ୱୟସହ ରାଜା ଯୁଧିଷ୍ଠିର କୁଶଳ ଅଛନ୍ତିତ ? ଦ୍ରୁପଦ ଦୁଲଣୀସହ କୁମାରମାନଙ୍କର ସର୍ବ୍ବେବ କୁଶଳତ ?

ଅର୍ଜ୍ଜୁନ— ସମସ୍ତେ କୁଶଳ ଅଛନ୍ତି ମହାରାଜ !

ଦୁର୍ଯ୍ୟୋ—ଭାଇ ତୁମ୍ଭର ନିର୍ବନ୍ଧ ଅଖଣ୍ଡନୀୟ ; ମୋରପ୍ରତି ଏ ସ୍ନେହ ସୌଜନ୍ୟ ପ୍ରକାଶ ପୂର୍ବକ ତୁମ୍ଭେ କି ଉଦ୍ଦେଶ୍ୟରେ ଆସିଲ ତାହା ଜାଣିବା ନିମନ୍ତେ ମୁଁ ବଡ଼ ଉତ୍ସୁକ ।

ଅ୍ ନ—ମହାରାଜ ! ଧୈର୍ଯ୍ୟ କରନ୍ତୁ , ବନ୍ଦୀର ନିବନ୍ଧ ଅକ୍ଷଶ୍ରୀଙ୍କ ତେବେ ମୋର ଆଗମନର ଉଦ୍ଦେଶ୍ୟ କହୁଅଛି ଶୁଣନ୍ତୁ ।

( ମହ୍ଲାର ଶିରୋମଣି ମଧ୍ୟମାନ୍ତ ) ବୃତ୍ତେ

ଅହିନ୍ଦ୍ର ନରମଣି, ଯାଚୁଥିବା ଯେତ୍ରେ ବର ଦାଅ ସେତି ।୦।
ପଡିରଙ୍କ ମନେ, ମିବାର ଚିଏସେନେ, ଗଣୀଘନ୍ଦ ଧୋଇବେନେ
ରକ୍ଷା କରିଥିଲ ମୁହିଁ ଏନେ, (ରାଜା) ଦରବାର ମୋର ଅଳା
ରତ୍ନମା ।୧। ନୃତ୍ୟରେ ଯୋପାନ, ସରଜ ନବରାଣ ରଖିଥିଲ
ଛବ ମାନ, ଧୋଇଅଛି ଗତ ବହୁଦାନ, (ନିଜେ) ଯାଚୁଥିଲ
କର ନାହିଁ ମାଗୁଣି ।୨। ବୀରେନ୍ଦ୍ର ବଚନ ନୁହଇ କେବେ
ଅନ, କାରଣଶ୍ରେଷ୍ଠ ଅପଣ, ବଣ୍ଠାସେ ଥିଲି ତେଣୁ ଜାଣ,
(କେବେ) ପ୍ରାପ୍ୟ ମିଳିଗଲେ ହେବ ନମେଲିଣି ।୩।

ଦୁର୍ଯ୍ୟୋ--(କ୍ଷଣକାଳ ମୌନ ରହି ସ୍ମରଣକରିବ! ମୁଖଭଙ୍ଗି କରି ସ୍ୱଗତ ) ଏପୁଣି କଅଣ ? କ୍ଷଣକ ମଧ୍ୟରେ ଘୋର ପରି- ବର୍ତ୍ତନ ? ମନୁଷ୍ୟ ପାଗଲ ନା କ'ଣ !! ତା ହେଲେ ସମସ୍ତ ଉଦ୍ୟମ ସମସ୍ତ ଆୟୋଜନ ବୃଥା ହେଲା ! ଭାରତର ଭିନ୍ନ ଭିନ୍ନ ଅଞ୍ଚଳରୁ ରାଜନ୍ୟବର୍ଗଙ୍କୁ ନିମନ୍ତ୍ରଣ କରି ଆଣିବାର ପରିଶ୍ରମ ବୃଥା ହେଲା କି ନା ? ଏ ବିପୁଳ ସୈନ୍ୟସମାଗମରେ କେବଳ ହାସ୍ୟାସ୍ପଦ ସାର ହେଲା ? ଶୁଣାଗଲା, ଭୀଷ୍ମଙ୍କର କଠୋର ପ୍ରତିଜ୍ଞା ବାର୍ତ୍ତା ଶ୍ରବଣ କରି ପାଣ୍ଡବ ମାନଙ୍କର ମନରେ ଭୟ ଜାତ ହୋଇଅଛି ; ତେଣୁ ପାଣ୍ଡବନାଥର ଆଦେଶ ଅନୁସାରେ ରାଜ୍ୟ

ମାଟି ନେବା ନିମନ୍ତେ ଧନଞ୍ଜୟ ଆସିଅଛି। ଏବେ ତ କେବେ କଥାର ମନେ ପଡ଼ୁଅଛି। ମୁଁ ଅର୍ଜ୍ଜୁନଙ୍କ ନିକଟ ପ୍ରଦାନ ନିମନ୍ତେ ସ୍ୱୀକୃତ ହୋଇଅଛି; ବଡ଼ାନାହିଁ—କୌଣସି ବଡ଼ାନାହିଁ, ମୁଁ କ୍ଷତ୍ରିୟ, କ୍ଷତ୍ରିୟର ବାକ୍ୟ କେବେ ସିଁ ଅନ୍ୟଥା ହେବନାହିଁ!

(ପ୍ରକାଶ୍ୟ) ଧନଞ୍ଜୟ! ମନେଅଛି ସେଦିନର କଥା

ଛଦ୍ମ ମୁହିଁ ଦିଆଥିଲି ହେ କ୍ଷତ୍ରିୟ ଭାରତ,

ସତ୍ୟବଳେ ଚଳୁଅଛି ଅନନ୍ତ ବ୍ରହ୍ମାଣ୍ଡ

ରବି ଶଶି ସତ୍ୟବଳେ ହୁଅନ୍ତି ପ୍ରକାଶ,

ବହଇ ସମୀର ପୁଣି ବରଷଇ ଘନ

ଜଳଇ ଅନଳ, ବାନ୍ଧି ଦିଶୀମା ଆତୋୟର-

ଅନନ୍ତ ଅସୀମ ସିନ୍ଧୁ ବେଳା ଲଙ୍ଘେ ନାହିଁ।

ସେହି ସତ୍ୟେ ଯାଚିଅଛି ତୁମ୍ଭଙ୍କୁ ମୁଁ ବର

ମାଗ ଯାହା ଅଭିପ୍ରାୟ ଅଛି ଗୀରବର।

ଅର୍ଜ୍ଜୁନ—ମହାତ୍ମାଙ୍କ ଶାରମଣି କୌରବ ପ୍ରଧାନ

କାହିଁ ଆଉ କଛି ମୋର ବିଶେଷ ପ୍ରୟୋଜନ,

ଶୋଭଇ ମସ୍ତକେ ତବ ଏହି ଯେ ମୁକୁଟ

ପ୍ରତି ଉପକାର ବଦଳରୂପେ ଆଜ ମୋତେ

କରନ୍ତୁ ପ୍ରଦାନ ରକ୍ଷି ସତ୍ୟର ମର୍ଯ୍ୟାଦା।

ଦୁର୍ଯ୍ୟୋ—( ଉଚ୍ଚହାସ୍ୟ ପୂର୍ବକ )

( ପୀନ ପୟୋଧରାରେ କୃତ୍ତେ )

ହୀନକର୍ମ୍ମ ଯା'ର ହେ ହୀନକର୍ମ୍ମ ଯା'ର, ହାତେ ଅଛି ଧୂଳିକଣା ହୁଅଇ ପୋଡ଼ା ଅଙ୍ଗାର ( ଦୋଷା ) ସ୍ୱାଧୀନ ସମ୍ରାଟ ଯୋଗ

ଇନ୍ଦ୍ରଦେବଇ ସ୍ୱର୍ଗଭୋଗ, ଦାସବୃତ୍ତି ଅନୁରାଗ ବଢ଼ଇ ସଂସାରେ ତାର । ୧ । ଶତ୍ରୁକ୍ଷୀର ଦେଲେ ବାଡ଼ିଁ ହତଭାଗ୍ୟ ଯାଏ ଛାଡ଼ି ଇକ୍ଷୁରସ ପିଏ ଏଡ଼ି ଅସାର ମଣଇ ସାର । ୨ । ରାଜ୍ୟ ଧନ ଗଜ ବାଜୀ ବଳକ ପାଣ୍ଡବ ଅଙ୍ଗ, ମୁକୁଟ ହୋଇବ ଖଣ୍ଡି, ପ୍ରତକ୍ଷ-କପାଳଗାର । ୩ ।

ଭାଇ ଧନଞ୍ଜୟ ! ଦେଖୁଅଛ ତୁମ୍ଭେ ବଡ଼ ଭାଗ୍ୟହୀନ, ରାଜ୍ୟ, ଧନ ଅଶ୍ୱ, ଗଜ, ବସ୍ତ୍ର ଆଭରଣ ଜନପଦ ବାରଙ୍ଗନା ପ୍ରଭୃତି ଅସଂଖ୍ୟ ବହୁମୂଲ୍ୟ ଦୁର୍ଲଭ ପଦାର୍ଥ ମୋର ଭଣ୍ଡାରରେ ପୂର୍ଣ୍ଣ ରହିଅଛି, ତୁମ୍ଭେ ଏତେ ହୀନକପାଳିଆ ଯେ ସବୁ ଛାଡ଼ି ସାମାନ୍ୟ ଏହି ମୁକୁଟଟା ମାଗିଲ ? ମୁଁ ମନେ କରିଥିଲି ଅର୍ଜୁନ ମୋର-ଠାରୁ ନିଶ୍ଚୟ ସମଗ୍ର ରାଜ୍ୟ ମାଗିନେବ । ଅକୁଣ୍ଠିତ ଚିତ୍ତରେ ତାହା ମଧ୍ୟ ମୁଁ ଦେଇଥାନ୍ତି । ତୁମ୍ଭେ ଏଭଳି ସୁବର୍ଣ୍ଣ ସୁଯୋଗ ତ୍ୟାଗ କରି ବଡ଼ ଭୁଲ କରିଅଛ ; ଏଥିନିମନ୍ତେ ତୁମ୍ଭଠି ମୁଁ ବଡ଼ ଅସନ୍ତୁଷ୍ଟ ହୋଇଅଛି ।

ଅର୍ଜୁନ—ହଁ, ତାହା ସତ୍ୟ ମହାରାଜ ! ତଥାପି ମୁଁ କ୍ଷତ୍ରୀୟ ସନ୍ତାନ, ଯେଉଁ ରାଜ୍ୟର ନିମନ୍ତେ ଉଭୟ ପକ୍ଷର ଏ ବର୍ଷବ୍ୟାପୀ ସମରର ଆୟୋଜନ , ଯେଉଁ ରାଜ୍ୟର ନିମନ୍ତେ କୁରୁ ପାଣ୍ଡବ ପ୍ରତ୍ୟେକ ପ୍ରାଣରେ ବଳକରୀଷାର ପ୍ରଧୂମିତ ଅନଳଶିଖା ପୃଥ୍ୱୀ ଧ୍ୱଂସ କରିବାକୁ ବସିଅଛି , ସେହି ରାଜ୍ୟ ମୁଁ ମାଗିନେବା ସୁନ୍ଦର ହେବ ନାହିଁ ମହାରାଜ ! ଭାଗ୍ୟର ମୀମାଂସା ମନୁଷ୍ୟ ହାତରେ ହୁଏନାହିଁ, ଏକଥା ମହାରାଜ ଅବଗତ ନୁହନ୍ତି ।

—***—

"ଶୁଭ ମୋତେ ବାନ୍ଧ ଲକ୍ଷ୍ମଣ ହେ" ବୃତ୍ତେ

ଭାଗ୍ୟେ ଯାହା ଥିବ ତାହା ଘଟିବ ସଂସାରେ ହେ (ଧ୍ରୁବ)
ସତ୍ତ୍ୱପ୍ରଭୂ ଏଧରଣୀ ନଜାଣେ କାଏ ନୃମଣି, କା'ଘର ସୁନା-ଭୁଜଣି ଭୋଳେ ଭେନ୍ତୁ ମରେ ହେ ।୧। ଭାଗ୍ୟଭୋଗ୍ୟା ବସୁନ୍ଧରା କା'ର ଭୁଜ କା'ର ଶର, କେନ୍ତୁ ଉତ୍ତମ ଧର ସଶ ମଜା କେନ୍ତୁ କରେ ହେ ।୨। ମଦନମୂରତି କା'ର ବେଗେ ଶୋକେ କେ ଅସ୍ଥିର, ସମାନ ନାହିଁ ସଂସାର ସୁଖରେ ଦୁଃଖରେ ହେ ।୩। ମୋଭାଗ୍ୟେ ମୁକୁଟ ଥିଲ ବନ୍ଧ ତାହା ଘଟାଇଲ, ଇଂସ୍ତୁ ନୁଅ ଛଡ଼ା ଭଲ କ୍ଷମା ଦାଅ ପରେ ହେ ।୪।

ଦୁର୍ଯ୍ୟୋ—ଆଛା, ତେବେ ନିଅ (କହି ଶିରରୁ ମୁକୁଟ କାଢ଼ି ଅର୍ଜ୍ଜୁନ ହାତକୁ ଦେଲେ)

ଅର୍ଜ୍ଜୁନ—ମହାରାଜ ! ବର୍ତ୍ତମାନ ତେବେ ମୁଁ ବଦାୟ ହୁଏ ?

ଦୁର୍ଯ୍ୟୋ—ଏ କିପରି କଥା ଭାଇ ? ଏହାଙ୍କ ସୁନ୍ଦର ହେଲା ? ଏ ଘୋର ଅନ୍ଧକାର ରାତ୍ରିରେ ବର୍ତ୍ତମାନ ଯିବା ଅପେକ୍ଷା ସକାଳୁ ଉଠି ଗଲେ କି କ୍ଷତି ହେବ ?

ଅର୍ଜ୍ଜୁନ—ମହାରାଜ ! ଆପଣ ଜାଣନ୍ତି ବର୍ତ୍ତମାନ କପର ଦାୟିତ୍ୱର ଭାର ଆମ୍ଭମାନଙ୍କର ଉପରେ ପଡ଼ିଅଛି ; ସକାଳ ପାହିଲେ ମହାମତି ଭୀଷ୍ମଙ୍କ ସହ ସମର ଭୂମିରେ ଠିଆହେବାକୁ ହେବ, ଏପର ଅବସ୍ଥାରେ ସ୍ୱ ଶିବିର ଛାଡ଼ି ଅନ୍ୟତ୍ର ବୃଥା-କାର୍ଯ୍ୟରେ ସମୟକ୍ଷେପଣ କରିବା ସଙ୍ଗତ ହେଉ ନାହିଁ ।

ଦୁର୍ଯ୍ୟୋ—ଅଛା ଯାଅ ତେବେ । (କଛି ଦୂର ସଙ୍ଗେ ଯାଇ ଫେରଆସି) ଏଥିରବା ଉଦ୍ଦେଶ୍ୟ କଅଣ ? ଅର୍ଜ୍ଜୁନ

ଇଚ୍ଛା କରିଥିଲେ ମୋରଠାରୁ ଅବାଧରେ ରାଜସିଂହାସନ ନେଇ ପାରିଥାନ୍ତା, ସାମାନ୍ୟ ମୁକୁଟ ! ! କେ ଅଛୁ ?

—∞§❀§∞—

ପ୍ରହରୀର ପ୍ରବେଶ

ମନ୍ତ୍ରୀଙ୍କୁ ଡାକିଥିଲି ; ( ପ୍ରହରୀର ପ୍ରସ୍ଥାନ ) ମାତୁଳ ବିନା ଏ ରହସ୍ୟ ଭେଦ କରିବା ସହଜ ନୁହେ ।

ଶକୁନି ମନ୍ତ୍ରୀଙ୍କର ପ୍ରବେଶ

ଶକୁନି—ମହାରାଜ କୁରୁପତିଙ୍କର ଜୟ ହେଉ ।

ଦୁର୍ଯ୍ୟୋ—ମାତୁଳ ! ଗୋଟାଏ କଥାର ରହସ୍ୟ ଭେଦ କରିବା ନିମନ୍ତେ ଡକାଇଲି ; କିଛିକ୍ଷଣ ପୂର୍ବରେ ମଧ୍ୟମପାଣ୍ଡବ ଅର୍ଜୁନ ଅତି ପୂର୍ବପ୍ରଦତ୍ତ ବରଷ୍ଟୁପ ମୋରଠାରୁ ଅନଘମଣି-ମୁକୁଟ ଭିକ୍ଷାକରି ନେଇଅଛନ୍ତି । ମୁକୁଟଟା ପ୍ରତି ଅର୍ଜୁନର ଏତେ ଶ୍ରଦ୍ଧା କାହିଁକି ? କିଛି ବୁଝିଅଛନ୍ତି କି ?

ଶକୁନି— ଏଥିରେ ବୁଝିବାର ଆଉ ବାକି କଅଣ ରହିଲା ?- ଅହୋ ! ତାହା ନହେଲେକି ମଣିଷ ଏତେ ଶ୍ରେଷ୍ଠ ଅଚରଣ କରେ ? " ନଷ୍ଟଶସ୍ୟ କାନ୍ୟାଗତିଃ "

(ଯାହା ହେବାର ହେଲା ଏଣିକି) ବୃତ୍ତେ

ସେନା ସାମନ୍ତ ଶରତପୋଇଁ ହାତେ ପଇସା ତାଙ୍କର ନାହିଁ ॥ ୦

ଅନଘମଣି ମୁକୁଟ ମୁଲ, ଜାଣେ ଗୋବନ୍ଦ ଚତୁର ଛଳ

ହେଲା ଏବୁଦ୍ଧି ତେଣୁ କହାଇ । ୧

ରହସ୍ୟ କିଛି ନାହିଁ ରାଜନ ଯାହା କହିଲ ଧ୍ରୁବ ବଚନ

ଗୁପତେ ସବୁ ଶୁଣିଛି ମୁହିଁ । ୨

ମୁକୁଟ ମାଗିନେଲା ଅର୍ଜ୍ଜୁନ ଶକବେ ତଙ୍କାରେ କାଲି ଘାଣ
ଛଣିବେ ରଣ ଶଙ୍କଭ ନାହିଁ । ୩
ସମରେ କାଲି ସଫା ହୋଇବ, କୃଷ୍ଣ ଗରବ ସବୁ ଭାଙ୍ଗିବ
ଅବାଧେ ଭୋଗ କରନ୍ତୁ ମହୀ । ୪

ଦୁର୍ଯ୍ୟୋଧନ— ଆଶ୍ଚର୍ଯ୍ୟ ମେଧା ଶକ୍ତି! ବିଧାତା ମନ୍ତ୍ରୀମାନଙ୍କ ମସ୍ତିଷ୍କ ସ୍ୱତନ୍ତ୍ର ଉପାଦାନରେ ଗଠିତ କରିଥାଏ । ତାହା ନହେଲେ କି ଏଭଳି ବୁଦ୍ଧି ପଶିଆ ଅନ୍ୟଠାରେ ସମ୍ଭବେ ? ମାତୁଳ ! ଯଥାର୍ଥ କଥା, ଅର୍ଥାଭାବରେ ପାଣ୍ଡବମାନେ ଛତ୍ରଭଙ୍ଗ ହେଲେଣି, ଜୟଲକ୍ଷ୍ମୀ ଅମ୍ଭମାନଙ୍କ ପ୍ରତି ସୁପ୍ରସନ୍ନା ; ଆପଣ ବର୍ତ୍ତମାନ ଯାଇ ବିଶ୍ରାମ କରନ୍ତୁ ।

ଉଭୟେ ଉଭୟଙ୍କ ଦଗରେ—



## ୨ୟ ଦୃଶ୍ୟ ।

### କୃଷ୍ଣଙ୍କର ଅପେକ୍ଷା

ଶ୍ରୀକୃଷ୍ଣ — ଦୁଷ୍ଟର ଦମନ ଶିଷ୍ଟର ପାଳନ ନିମନ୍ତେ ମର୍ତ୍ତ୍ୟ-ମଣ୍ଡଳରେ ମୋର ଆଗମନ ; ଦୁର୍ଦ୍ଦାନ୍ତ ଯଦୁବଂଶ ଦଳ ଜନ୍ମଗ୍ରହଣ କରି ନାନାବିଧ ଦୁଷ୍କର୍ମ ପ୍ରଭୃତି ଦ୍ୱାରା ପୃଥିବୀ ଛାରଖାର କରି-ବାକୁ ବସିଅଛନ୍ତି । ଧର୍ମ୍ମପ୍ରାଣ ପାଣ୍ଡବଙ୍କୁ ଉପଲକ୍ଷ୍ୟ କରି ସମସ୍ତ ଅବର୍ଜ୍ଜନା ପରିଷ୍କାର କରିବାକୁ ହେବ ।

ଅର୍ଜ୍ଜୁନର ପ୍ରବେଶ

ଅର୍ଜ୍ଜୁନ—ଏହିଯେ ମହାପ୍ରଭୁ ! ଆପଣ ଏ ନିର୍ଜ୍ଜନ ସ୍ଥଳରେ ଏଠାରେ ଏକାକୀ କାହିଁକି ଠିଆ ହୋଇ ଅଛନ୍ତି ?

କୃଷ୍ଣ — ତୁମ୍ଭର ଅପେକ୍ଷାରେ ;

ଅର୍ଜ୍ଜୁନ— ମୁଁ କି ଆସି ନଥାନ୍ତି ଯେ ଆପଣ ଶୀଘ୍ର କାହିଁକି ଏଠାରେ ଏକୁଟିଆ ଠିଆହୋଇ ମୋର ପାଇଁ ଏତେ କଷ୍ଟ-ସ୍ୱୀକାର କରୁଅଛନ୍ତି ?

କୃଷ୍ଣ—ଧନଞ୍ଜୟ !

( ମନାକଲେ ଯେତେ ଯେତେବେଳେ ବହୁତ ବୁଝେ )

ପ୍ରିୟଜନ ପାଇଁ କଷ୍ଟ ମୋର ନାହିଁ ନକର ଶୋଚନା ପ୍ରିୟ-ବର ହେ, ଭକତ ଅଧୀନ ମୁହିଁ ଚିରଦିନ ଭକ୍ତିଭାବେ କଣା ତୁମ୍ଭର ହେ । ୦ । ସିବାରୁ ଏକାକୀ ଥିଲି ଏଥି ଟାକି ଆଶଙ୍କା କରିଣ ବିପଦର ; ଖଳ ଦୁର୍ଯ୍ୟୋଧନ ନୃହଇ ସଜ୍ଜନ ଅଛନ୍ତି କେତେକ ମାତର । ୧ । ପ୍ରାଣେ ହେଲି ଭୟ ତେଣୁ ଧନଞ୍ଜୟ ଚାହିଁ ଥିଲି ତବ ଆସିବାର ; ଚନ୍ତା ଏବେ ଦୂର ଆସ ବାରବର କଠିନ ସମାସ୍ୟା ଏଥର । ୨ ।

ଅର୍ଜୁନ—ଯଦି କୃଷ୍ଣ ପଦେ ଚିନ୍ତା ଭକ୍ତିସ୍ତବ ପଦ ପଙ୍କଜେ
ବିଷମେ ଦୁର୍ଗମେ ବାପି କା ଚିନ୍ତା ମରଣେ ରଣେ ।

କୃଷ୍ଣ—ଧନଞ୍ଜୟ ! ସେହିରୁ ସ୍ଥିତ , ଆଉ ବିଳମ୍ବ କରିବାର ସମୟ ନାହିଁ । ରଜନୀ ଶେଷ ହେବାକୁ ବସିଅଛି ; ଶୀଘ୍ର ଅସ ;

ଅର୍ଜୁନ— ପାଣ୍ଡବ ଗୋବିନ୍ଦର ଇଚ୍ଛାଧୀନ ; ଅଗ୍ର ଚଳିବେ ଚଳନ୍ତୁ । (ପ୍ରସ୍ଥାନ)

—∞※∞—

## ଅଦୃଷ୍ଟକୁମାରୀଗଣ !

ଲୀଳା-ବୃତ୍ତ

ଚିରମୁକ୍ତ ଗଙ୍ଗା ସୁତ ଦଶା ଦେଖ ସ୍ୱଜନେ ଗୋପନେ
(ଅଜ)ଭୀଷଣ ଅନଳ ଜଳନ୍ତ ପ୍ରବଳ ମରମେ ମରମେ ପଶ୍ୱିଣେ । ୦
ଧୂଳି ନିନ୍ଦପଣ ଦେଖି ପାଞ୍ଚବାଣ ଶୁଖିଯାଏ ପ୍ରାଣ ପାଣ୍ଡବେ
ଧିକ ଧିକ ନିଶି ଦେଖ ଜ୍ୱଳ ଜ୍ୱଳ ଅସ୍ଥିର ଗାଙ୍ଗେୟ ଅପନେ । ୧
ପାଣ୍ଡବ ନିଧନେ କୁନ୍ତୀଦେବୀ ପ୍ରାଣେ ଯେ ବଜ୍ର ବାଜିବ ସଘନେ
ଦେବ ବେଳପନା ଭୀଷ୍ମ ମହାମନା ଜ୍ଞାନସ୍ଥାନ ଅଜି ଭୁବନେ । ୨
ଶିରେ କରମାର ଡାକନ୍ତୁ ଶ୍ରୀହରି ପାଣ୍ଡବ ଉଦ୍ଧାର କାରଣେ ;
ମନ୍ତ୍ରୀ ଦୁର୍ଯ୍ୟୋଧନ ସୂତେ ସେ ଅର୍ଜୁନ ଉପଗତ ହେଲେ ତକ୍ଷଣେ

—∞※∞—

# ୪ର୍ଥ ଅଙ୍କ ।

୧ମ ଦୃଶ୍ୟ—    ଭୀଷ୍ମଙ୍କ କୁଟୀର ।

ଏକାକୀ ଭୀଷ୍ମ ନିଜର ସମସ୍ତ ପ୍ରକାର ଅସ୍ତ୍ରଶସ୍ତ୍ର ନିକଟରେ ରଖି, ଟାଙ୍କୋଟି ଶର ହାତରେ ଧରି ଚିନ୍ତିତଭାବେ ।

ଭୀଷ୍ମ—ଦୁଷ୍ଟ ଦଳର ଉତ୍ତେଜନାରେ ପଡ଼ି କି ଭୀଷଣ ପଣ କରି ପକାଇ ଅଛି !! ନିଜର ସନ୍ତାନ ମାନଙ୍କୁ ନିଜ ହସ୍ତରେ କାଲି ବିନାଶ କରିବି. ଏହାଠାରୁ ବଳି ନୃଶଂସତା ଅନ୍ତ ଦୁନିଆରେ କଅଣ ହୋଇପାରେ ? ପଞ୍ଚପାଣ୍ଡବଙ୍କର ନାମାଙ୍କିତ ଏହି ପାଞ୍ଚଶର ଭୀଷଣ !! ଏଥିରେ ସରଳ ଉଦାର ଧର୍ମପ୍ରାଣ ପାଣ୍ଡୁ ପୁତ୍ରର ବଞ୍ଚିବାର କୌଣସି ଉପାୟ ନାହିଁ । ଓହୋ ! ( ଦୀର୍ଘନିଶ୍ୱାସ ) ଏହି ଘୋର ନିଷ୍ଠୁର କାର୍ଯ୍ୟ ତୁଣି ମୋର ହାତରେ ସାଧିତ ହେବ ? ହାୟ ମା କୁନ୍ତୀ ! ତୁ ମୋତେ କେତେ ଭକ୍ତିକରୁ, କେତେ ସମ୍ମାନ ଦେଖାଉ, ସେହି ସମ୍ମାନ ସେହି ଭକ୍ତିର ପ୍ରତିଦାନ ଏହାହିଁ ହେଲା ? କାଲି ମୁଁ ତୋର ସନ୍ତାନମାନଙ୍କୁ—ଧାର୍ମିକ ଶାନ୍ତଶିଷ୍ଟ ନ୍ୟାୟପରାୟଣ ତୋର ପଞ୍ଚ-ରତ୍ନଙ୍କୁ ନିଜ ହସ୍ତରେ ବଧ କରିବି, ଏ ବଜ୍ର ନିଷ୍ଠୁର କଠିନ ବାର୍ତ୍ତା ଯେତେବେଳେ ତୋ କର୍ଣ୍ଣରେ ବାଜିବ, ପୁଣି ପୂଜନୀୟ ପିତାମହ ତୋର ହୃଦୟନିଧି ମାନଙ୍କୁ ବିନାଶକଲେ ‹ସମ୍ବାଦ ଯେଉଁ ମୁହୂର୍ତ୍ତରେ ଶୁଣିବୁ, ଚିରଦୁଃଖିନୀ ! ତୋର ମନ ସେତେ ବେଳେ କ'ଣ ନହେବ ? ଦୟାମୟ ! ଏ ବୃଦ୍ଧବୟସରେ ଶେଷକୁ

ଏହି କାର୍ଯ୍ୟ ସାଧନ କରାଇବାର ଉଦ୍ଦେଶ୍ୟ ଥିଲା ? ଓହୋ ! ଭାବିଲେ ମନ ଅସ୍ଥିର ହେଉଅଛି, କୃପାସିନ୍ଧୋ ! ଦୀନବନ୍ଧୋ !

"କାହିଁଗଲା ସେହି ଦୁଃଖମୟ ଦିନ" ବୃତ୍ତେ

କାହିଁଗଲା ହରି ଧର୍ମ ଦଣ୍ଡଧାରୀ ସ୍ୱପଦ ଛାଡ଼ି ଏ ସଂସାରେ; ବଂଶ ମାରିବାକୁ ଏ ବାଣ ଦାସକୁ ଦେଇ ଲୁଚିଛନ୍ତି ଗୋପନେ । ୦ ।

ଏହି ପାଞ୍ଚବାଣ ଦାସକୁ ଦେଇ କହିଥିଲ ଦିନେ ନେବ ଫେରାଇ ; ସଙ୍କଟ ସମସ୍ତ ହେଲା ଗୋସାଇଁ ଦୂରହେଉ ଦୁଃଖ ଦର୍ଶନେ । ୧ । ପାଣ୍ଡବ କୌରବ ମୋର ସମାନ ଧାର୍ମିକ ପାଣ୍ଡବେ କର ନିଧନ ; ଏ ଯଶ ଲଭିବ ଗରୁଡ଼ାସନ ଭୀଷ୍ମ ପରୀକ୍ଷା ଜୀବନେ । ୨ । ଭକ୍ତ ଜୀବନ ନନ୍ଦନନ୍ଦନ , ପାଣ୍ଡବ-ବାନ୍ଧବ ମଧୁସୂଦନ ; ଉଦ୍ଧାର ପାଣ୍ଡବେ ଜଗମୋହନ ଅକୂଳ ଜଣାଣ ଚରଣେ । ୩ ।

( ମାୟା ଦୁର୍ଯ୍ୟୋଧନ ବେଶରେ ଅର୍ଜ୍ଜୁନର ପ୍ରବେଶ )

ଅର୍ଜ୍ଜୁନ—ପିତାମହ ! ଏ କ'ଣ ? ଆପଣ କଅଣ ଗୋଟାଏ ବଡବିପଦରେ ବୁଡ଼ି ରହିଥିଲା ପରି ଜଣା ପଡ଼ୁଅଛି ଯେ ?

ଭୀଷ୍ମ—କିଏ ? ଦୁର୍ଯ୍ୟୋଧନ ? ପୁଣି କାହିଁକି ଏତେ ରାତ୍ରରେ ? ଏହି କେତେକ ଘଣ୍ଟା ପୂର୍ବରେତ ତୁମ୍ଭମାନଙ୍କ ନିକଟରେ ପୃଥ୍ୱୀର ପାଞ୍ଚୋଟି ଉଜ୍ଜ୍ୱଳ ରତ୍ନର ଅସ୍ତିତ୍ୱ ଲୋପ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇ ଆସିଲି , ପୁନର୍ବାର ଆସିବାର ଉଦ୍ଦେଶ୍ୟ କଅଣ ? ଦୁର୍ମ୍ମତି ଶକୁନୀ କିଛି ନୂତନ ଚକ୍ରାନ୍ତର ସୂଚନା କରି ଅଛିକି ?

ଅର୍ଜୁନ—ନା ପିତାମହ ସେ ସବୁ ଛଡ଼ନ୍ତୁ ହେ, ଗୋଟାଏ ବିଶେଷ କାର୍ଯ୍ୟନେଇ ଅସମୟରେ ଆପଣଙ୍କ ନିକଟକୁ ଆସି-ବାକୁ ବାଧ୍ୟ ହୋଇଅଛୁ । ଶୁଣନ୍ତୁ:—

ରାଗ ଅଷାଢ଼ଶୁକ୍ଳ ।

ସତ୍ୟ ଦୃଢ଼ମାସ୍ୱ ହେ ପିତାମହ, ହେଲା ରଣ ସଙ୍ଗ ପାଣ୍ଡବସହ,
ବ୍ୟାସ ତପୋଧନ ମଧ୍ୟସ୍ଥ ପଣେ, ମିଶିଗଲୁଁ ବେନି ପକ୍ଷ ଏକଷଣେ;
ଭାଇସଙ୍ଗେ ଗୋଳ, ବୁଝିଲୁ ଅଛା ଅଶ୍ୟାନ୍ତି କେବଳ ॥ ୧
ପାଞ୍ଚଖଣ୍ଡି ଗ୍ରାମ ଦେଲୁ ତାହାଙ୍କୁ, ଚଳନ୍ତୁ ଆଦର ନଜ କର୍ମକୁ,
ଥିବେ ଅନୁଗତ ସଦା ମୋହର, ଏହି ସର୍ତ୍ତେ ଚନ୍ଦା ପାଞ୍ଚ ସୋଦର, ଲୋଡ଼ା ନାହିଁ ରଣ, ଉଦରୁ ଭରିବେ କିଏ କେତେ ଧନ ॥ ୨

ଭୀଷ୍ମ—(ଆନନ୍ଦବିହ୍ୱଳଭାବେ) ବତ୍ସ ଦୁର୍ଯ୍ୟୋଧନ ! ମହା-ରାଜ ଦୁର୍ଯ୍ୟୋଧନ ! ଚିରଜୀବୀହୁଅ; ଏହା ସମ୍ବାଦ ନୁହେ-ଚିର-ହାହାମୟ ଭୀଷଣ ମରୁଭୂମିରେ ସୁଶୀତଳ ସୌରଭମୟ ମଳୟା-ନିଳର ତରଙ୍ଗ । ଶୁଷ୍କକଣ୍ଠ ତାଳୁ ତୃଷାର୍ତ୍ତରପକ୍ଷେ ମନ୍ଦାକିନୀର ପ୍ରବାହ । କଣ୍ଠାଗତ ପ୍ରାଣ ମନୁଷ୍ୟର ମୃତସଞ୍ଜୀବନୀ ଅମୃତବୃଷ୍ଟି ବତ୍ସ, ଯାଅ ବତ୍ସ ! ଆଜି ଏ ଦଗ୍ଧପ୍ରାଣ ଶୀତଳ କରିଅଛ, ସୁଧାରସସ୍ରୋତ ବୁହାଇ ଦେଇଅଛ; ଆଶୀର୍ବାଦ କରେଁ ଦୀର୍ଘ-ଜୀବୀ ହୋଇ ନିଷ୍କଣ୍ଟକଭାବେ ସୁଖଶାନ୍ତିରେ ରାଜସିଂହାସନ ଭୋଗ କର । ଭାଇ ଭାଇ ମିଳି ଦୁଷ୍ଟଦଳନ କର, ଶିଷ୍ଟ ପାଳନ କର, ପୃଥିବୀରେ ଅକ୍ଷୟ କୀର୍ତ୍ତି ଅର୍ଜ୍ଜନ କର, ଏ ମଧୁମୟ ଦୃଶ୍ୟ ଦେଖି ମୋର ମାନବ ଜନ୍ମ ସାର୍ଥକ ହେଉ, ଶେଷରେ ସ୍ୱର-

ଭ୍ରରେ ଅନନ୍ତରେ ଅନନ୍ଦମୟ ଧାମକୁ ଚାଲିଯାଏ ।

ଅର୍ଜ୍ଜୁନ— ପୂଜ୍ୟପାଦ ପିତାମହଙ୍କର ଆଦେଶ ଅବନତ ମସ୍ତକରେ ଗ୍ରହଣ କଲି, ଏସ୍ଥଳରେ ମୋର ଅନ୍ତର ଗୋଟିଏ ଭିକ୍ଷାଅଛି ଆଦେଶହେଲେ ଜଣାଇବି ।

ଭୀଷ୍ମ—ନିର୍ଭୟ ନିର୍ଦ୍ଦ୍ୱନ୍ଦ୍ୱରେ କହିଯାଅ ବାପ

ଅର୍ଜ୍ଜୁନ— ତେବେ ଶୁଣନ୍ତୁ:—

" ସେଗୁଧାବାଉଲି " ବୃତ୍ତରେ

ଆଦେଶ ତୁମ୍ଭର ପାଳି ନିରନ୍ତର ଯାପିବି ଜୀବନ ସଂସାରରେ ମାବ ମନେଭ୍ରାନ୍ତ ନାଶୁଅଛି ଧୃତ ଭ୍ରାତ ଭଗାର ଜଗତରେ, ଭାଇ ଭାଇ-ଭାଳେ, ପଡ଼ଇ ଦେଖୁଛି ସବୁକାଳେ । ହତେ ବିପକ୍ଷତ ହୋଇଲେ ଉଦ୍ଧତ କାହାକୁ ଡାକିବି ସେତେ-ବେଳେ । ୧ । ପୂର୍ବେ ସାବଧାନ ଥିବା ସମୀଚୀନ ତେଣୁ ପଦେ ଏହି ନିବେଦନ, ପାଣ୍ଡବେ ବଧିବ ବୋଲି ଆହେଦେବ ଦେଖା-ଇଣ ଥିଲ ଯେଉଁ ବାଣ, ସେହି ପାଞ୍ଚଶର, ପ୍ରଦାନ କରନ୍ତୁ ବୀରବ୍ରତ, ଆତ୍ମରକ୍ଷାପାଇଁ ରଖିଥିବି ମୁହିଁ ମାଗୁଣି ଏତିକ ଶେଷେ ମୋର । ୨

ଭୀଷ୍ମ 'ଉତ୍ତମ'

ସେ ବାଣେ ମୋହର ଆଉ କେଉଁ ପ୍ରୟୋଜନ
ନେଇ ତାହା ରଖ ବତ୍ସ ଯହିଁ ଇଚ୍ଛା ତବ
ତୁମ୍ଭର ମଙ୍ଗଳ ସଦା କରନ୍ତୁ କେଶବ ।

(ଏହା କହି ପଞ୍ଚବାଣ ତୂଣୀରୁ ଉଣୀର ଅର୍ଜ୍ଜୁନ ହାତକୁ ଦେଲେ ।)

ଅର୍ଜ୍ଜୁନ—ତେବେ ମୁଁ ବିଦାୟ ପିତାମହ, ଅନେକ ରାତ୍ରୀ ହୋଇଅଛି, ବିଶ୍ରାମ କରନ୍ତୁ ।

ଭୀଷ୍ମ—ଯାଅ ବତ୍ସ ନିର୍ବିରୋଧେ ଭୋଗକର ମହୀ ;
ଭାଇ ଭାଇ ମିଳନର ଯମୁନା ଜାହ୍ନବୀ -
ସମ୍ମିଶ୍ରଣେ ଲିଭିଯାଉ ବିବାଦ-ଅନଳ ।
ପରସ୍ପର ପ୍ରାଣେ ଅସୁ ସାମ୍ୟ ମୈତ୍ରୀ ପ୍ରୀତି
ଧୌତ ହେଉ ଈର୍ଷ୍ୟା ଦ୍ୱେଷ ଅବର୍ଜନା ରାଶି
ସୁବର୍ଣ୍ଣମଣ୍ଡିତ ରହୁ ଉଭୟ ସଂସାର ।

( ଅର୍ଜ୍ଜୁନର ପ୍ରସ୍ଥାନ ପର )

(ଅସ୍ଥୈର୍ଯ୍ୟଭାବେ) ଏ କଅଣ ? ସଂସାରର ଏଛବ କାହିଁକି ? କାପଟ୍ୟର ଗୋଟାଏ ପ୍ରବାହ ବହିଗଲାପରି ବୋଧ ହେଉଅଛି ଯେ ? ହେଲା କଅଣ ? ମୋର ଚକ୍ଷୁର ସମ୍ମୁଖରେ ବୀଭତ୍ସ ବିକଟ ଛବି ବାରମ୍ବାର ପଡୁଅଛି କାହିଁକି ? ଏଁ ? ଏଁ ? ଏ ସ୍ୱପ୍ନ ନା କଅଣ ? ଦୁର୍ଯ୍ୟୋଧନର—ହୃଦୟର ଏତେ-ଆଶା [illegible]

(ପ୍ରସ୍ଥାନ)



## ୨ୟ ଦୃଶ୍ୟ ।

ଶେଷ ଗୀତ

“ଏଲଫ୍ରେଡ ଥିଏଟ୍ରିକେଲ ସୁର-ତାଳ ଟୁଲ୍, ”

ନିଶା ଅବସାନ ହେଲାଣିରେ ସହଚର (ପଦ)
ଭୀଷ୍ମର ଠାଣପଣ ଭାଙ୍ଗିଲେ ଜନାର୍ଦ୍ଦନ
ବାଜିଲାଣି ତେଣେ ପାଣ୍ଡବର ରଣ ଭେରୀ ॥ ୧
ହିଷମ ରଣେ କାଳି ଜଗତ ଯିବା ଜାଳି
ସୁଦର୍ଶନ ଧର ଦଉଡ଼ିବେ ନିଜେ ହରି ॥ ୨
ଘଟନା ହେଲା ଶେଷ ମେଲାଣି ନେବା ଆସ
କ୍ଷମାଦେବ ଦୋଷ ଦିଇଅଛୁଁ ନୂଆଁକାର ॥ ୩
ଭକତବତ୍ସଳ ପ୍ରାଣେ ସକଳ ଶ୍ରୀଚରଣେ
ତୁଣିପାତ କର କୃପା ଭିକ୍ଷା-ଝୁଲି ଧରି ॥ ୪

